ପ୍ରାଚୀଗ୍ରନ୍ଥମାଳା ଷଷ୍ଠ ଖଣ୍ଡ

# ଭଜନମାଳା

( ପ୍ରଥମ ଶତକ )




ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରାଚୀଗ୍ରନ୍ଥମାଳା ଷଷ୍ଠ ଖଣ୍ଡ

# ଭଜନମାଳା

## ପ୍ରଥମ ଶତକ

ଭୀମଭୋଇ କୃତ

ପୁନର୍ମୁଦ୍ରିତ ଚତୁର୍ଥ ସଂସ୍କରଣ

୧୯୭୦




ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

ମୂଲ୍ୟ—ଏକଟଙ୍କା ପଚିଶ ପଇସା

# ସୂଚୀପତ୍ର

| ବିଷୟ | | ପୃଷ୍ଠାଙ୍କ |
|---|---|---|

ବିଷୟ | | ପୃଷ୍ଠାଙ୍କ
--- | --- | ---



ଇତି ପ୍ରଥମ ଖଣ୍ଡ ସୂଚୀ ସମାପ୍ତ

—o—

# ମୁଖବନ୍ଧ

—:*:—

ପ୍ରଥମ ସଂସ୍କରଣରେ ପ୍ରଥମ ଓ ଦ୍ୱିତୀୟ ଭାଗରେ ସର୍ବ ମୋଟରେ ୧୭୫ ଭଜନ ପ୍ରଦତ୍ତ ହୋଇଥିଲା । ଏହି ସଂସ୍କରଣରେ ୨୫ ଗୋଟି ଭଜନ ଯୁକ୍ତ କରାଯାଇ ପ୍ରଥମ ଭାଗରେ ଏକଶତ ଓ ଦ୍ୱିତୀୟ ଭାଗରେ ଏକଶତ ସନ୍ନିବେଶିତ ହୋଇଅଛି ।

ପ୍ରଥମ ସଂସ୍କରଣରେ ଯାହା କିଛି ପ୍ରମାଦ ଥିଲା ତାହା ଏହି ସଂସ୍କରଣରେ ପରିଷ୍କୃତ ହୋଇଅଛି । ଏହି ସଂଶୋଧନ କାର୍ଯ୍ୟ ନିମିତ୍ତ ଆମ୍ଭେ ଶ୍ରୀ ବାବୁ ପଦ୍ମଲୋଚନ ଗୌନ୍ତିଆ, ରମେଲା, ଜି: ସମ୍ବଲପୁର; ପରଲୋକଗତ କୁମ୍ଭୀପଟ୍ଟୀଧାରୀ ସାଧୁ ବ୍ରହ୍ମାବଧୂତ ବାବା ଅଚ୍ୟୁତାନନ୍ଦ, କୁମ୍ଭୀପଟ୍ଟୀଧାରୀ ସାଧୁ ବ୍ରହ୍ମାବଧୂତ ଶ୍ରୀ ବିଶ୍ୱନାଥ ବାବାଙ୍କଠାରେ କୃତଜ୍ଞତାପାଶରେ ଆବଦ୍ଧ । ଭଜନମାନଙ୍କର ଯେ ନୂତନ କ୍ରମ ପ୍ରଦତ୍ତ ହୋଇଅଛି ତାହା ବିଶ୍ୱନାଥ ବାବାଙ୍କ ନିର୍ଦ୍ଦେଶରେ ହୋଇଅଛି । କବିଙ୍କ କୃତିର ମୌଳିକତା ରକ୍ଷା କରିବାରେ ଯଥା ସାଧ୍ୟ ଚେଷ୍ଟା କରାଯାଇଅଛି । ଭୀମଭୋଇଙ୍କ ଜୀବନ ଚରିତ ସ୍ତୁତିଚିନ୍ତାମଣିର ମୁଖବନ୍ଧରେ ବିଶଦଭାବରେ ଲିଖିତ ହୋଇଅଛି । ପୁନରାବୃତ୍ତି ନିଷ୍ପ୍ରୟୋଜନ । ମହିମାଧର୍ମର ପ୍ରତିଷ୍ଠାତା ମହିମା ଗୋସାଇଁଙ୍କର ଭୀମ ଜଣେ ପ୍ରଧାନ ଭକ୍ତ ଥିଲେ । ଗୋସାଇଁଙ୍କ ଆଦେଶରେ ସେ ସ୍ୱ କବିତ୍ୱରେ ମହିମାଧର୍ମ ପ୍ରଚାର କଲେ । ଭୀମ କବିଙ୍କର କବିତ୍ୱର ଧାରା ଜନମନରେ ତୃପ୍ତି ବିଧାନ କରେ । ଜ୍ଞାନୀ, କର୍ମୀ ଓ କବି ସତ୍ୟ, ଶିବ ଓ ସୁନ୍ଦରର ଯଥାକ୍ରମରେ ସେବକ । ଏମାନେ ପ୍ରସ୍ତୁ ସମଭାବାପନ୍ନ, ଜଣକଠାରେ ଅନ୍ୟମାନଙ୍କର ଭାବ ପ୍ରଚ୍ଛନ୍ନ ଭାବରେ ନିହିତ କିନ୍ତୁ ପ୍ରତ୍ୟେକ ନିଜର ବ୍ୟକ୍ତିତ୍ୱରେ ଅବସ୍ଥିତ । ଭଗବାନ ଚିର ସୁନ୍ଦର । ତାଙ୍କର

ଜଗତ ସୌନ୍ଦର୍ଯ୍ୟମୟ । କବି ସୌନ୍ଦର୍ଯ୍ୟର ଉପାସକ, ଭଗବାନଙ୍କର ଭକ୍ତ । ସେ ଜ୍ଞାତା ସେ ବକ୍ତା ସେ କବି । ସେ ସ୍ୱ ଅନୁଭୂତ ବିଷୟ ଅତି ସୁନ୍ଦର ଭାବରେ ଲୋକ ସମକ୍ଷରେ ପ୍ରକାଶ କରନ୍ତି । ସେ ଗୁରୁ । ସେ ଜଗତର ମଙ୍ଗଳ ନିମିତ୍ତ ଯାହା ସତ୍ୟ ଯାହା ହିତ କଥା ଶ୍ରେୟସ୍କର ତାହା ନିଜର କରୁଣାର୍ଦ୍ର ହୃଦୟରେ ହୃଦ୍ୟ ଭାଷାରେ ଅଭିବ୍ୟକ୍ତ କରନ୍ତି । ଏହି ବିଷୟ-ମାନ ଶ୍ରୀମଙ୍କଠାରେ ପୂର୍ଣ୍ଣମାତ୍ରାରେ ପ୍ରଯୁଜ୍ୟ ।

ଶ୍ରୀମ ମହିମା ଗୋସାଇଁଙ୍କ ବୃକ୍ଷ ପ୍ରବୃକ୍ଷ ନାମରେ ନାମିତ କରି ଅଛନ୍ତି । ମହିମାଧର୍ମାବଲମ୍ବିଙ୍କ ମତରେ ସେ ସ୍ୱୟଂ ବୃକ୍ଷରୂପୀ ଭଗବାନ । ସ୍ତୁତି ଭଜନ ନୂତନ ନୁହେ । ପ୍ରାଚୀନ କାଳରୁ ଏହାର ପ୍ରଚଳନ ଅଛି । ବୈଦିକ ସୁକ୍ତ ବୌଦ୍ଧ ଗାନ ଓ ଦୋହା ଏହି ଭଜନାଦିର ପ୍ରସୂତି । ଉତ୍କଳର ଅଚ୍ୟୁତାନନ୍ଦ, ବଳରାମ, କବିର, ନାନକ, ଶୁରଦାସ, ଜ୍ଞାନଦାସ ପ୍ରଭୃତି ଜ୍ଞାନ-ମିଶ୍ରା-ଭକ୍ତିର ଉପାସକ । ସେମାନଙ୍କ ଭଜନାଦିରେ ଶରୀରର ତତ୍ତ୍ୱଭେଦ ତଥା ଭଗବାନ ସଗୁଣ ଓ ନିର୍ଗୁଣ, ସାକାର ଓ ନିରାକାର ଇତ୍ୟାଦି ସ୍ପଷ୍ଟରୂପେ ପ୍ରତିପାଦିତ । ଓଡ଼ିଆ ଭାଷାରେ ଅନେକ ଭକ୍ତକବିଙ୍କ ଭଜନ ଅଛି, ସେ ସବୁର ଆଲୋଚନା ନିଷ୍ପ୍ରୟୋଜନ । ଶ୍ରୀମଭୋଇଙ୍କ ଭଜନ ସେହି ସବୁର ଅନୁକରଣରେ ଲିଖିତ । ସେମାନେ ରାମ ବା କୃଷ୍ଣଙ୍କୁ ଅଲେଖ ନିରଞ୍ଜନ ଓ ଶ୍ରୀମଭୋଇ ମହିମା ଗୋସାଇଁଙ୍କୁ ଅଲେଖ ଓ ନିରଞ୍ଜନ କହି ଅଛନ୍ତି ମାତ୍ର । ଶ୍ରୀମଭୋଇଙ୍କ ଭଜନମାନ ଉତ୍କଳରେ ପ୍ରାୟ ସର୍ବତ୍ର ବିଦିତ । ବ୍ରହ୍ମଜ୍ଞାନୀଙ୍କଠାରୁ ସାଧାରଣ ଲୋକ ପର୍ଯ୍ୟନ୍ତ ତାଙ୍କର ଭଜନମାନ ଖଞ୍ଜଣି ସାହାଯ୍ୟରେ ବୋଲନ୍ତି । ଇତି ।

କଟକ
୧୫ । ୮ । ୩୪ } ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

# ଭଜନମାଳା

( ୧ )

(୧) ବନ୍ଦନା ପାଦପଦ୍ମକୁ । ଧ୍ୟାଇ ଅରୂପାନନ୍ଦଙ୍କୁ ।
ଧ୍ୟାଇ ସ୍ୱାମୀ ପସ୍ୱରକୁ । ଘୋଷା ।

ନଖ କୋଣେ ସୁରସ୍ରୋତ                ମାଳ ମାଳ ଚନ୍ଦ୍ର ପୂର
ଅନନ୍ତ ବାସୁକି ଶିରେ ବହୁଛି ମକରନ୍ଦକୁ । ।

ଶ୍ରୀପଦ୍ମର ଦୀର୍ଘ ପ୍ରଭ                କୋଟିଏ ମୋର ବନ୍ଦନ
ଶରଣ ସୋଦର ପାଦ ନିର୍ଭୟ ଭଲ ମନ୍ଦକୁ । ୨ ।

ଗୃହ କର୍ମ ତେଜି ଭକ୍ତେ                ପ୍ରଚାରୁଛନ୍ତି ଜଗତେ
ଜୀବ ଉଦ୍ଧାର ନିମନ୍ତେ ଭରସା କରି ନାମକୁ । ୩ ।

କରୁଛନ୍ତି ନିର୍ମମାନ                ମାତା ପୁତ୍ରଙ୍କ ଧ୍ୟାନ
ଭେଦ ଅସ୍ତ୍ର ଦରଶନ, ଧରି ଚୌଷଠି ବନ୍ଧକୁ । ୪ ।

ଶ୍ରୀଗୁରୁଙ୍କ ପାଦ ତଳ                ଫୁଟିଛି ପଦ୍ମ କମଳ
ନାଦନା ଅମାପ ମୂଲ ଘେନ ନାସିକା ବନ୍ଧକୁ । ୫ ।

ଏକାକ୍ଷର ପାଦ ଚିହ୍ନି                ଭକ୍ତେ ଛନ୍ତି ବ୍ରହ୍ମଜ୍ଞାନୀ
ଶ୍ରୀମ ଅରକ୍ଷିତ ଭଣି ଧ୍ୟାଇ ଅନାଦି ସିଦ୍ଧଙ୍କୁ । ୬ ।

( ୨ )

(୨) ଈଶ୍ୱର କରିଛୁ ଲୟେ

କଳିଯୁଗେ ନାମ ବ୍ରହ୍ମ ଅଟେ ଅନନ୍ତ ଅକ୍ଷୟେ । ଘୋଷା ।

ସବୁଠାରୁ ସାର ବ୍ରହ୍ମ, ନିଷ୍କାମ ଭଗତ ଧର୍ମ
ଅକଳ୍ପନା ଅଣାକାର ଅଣସାଧନେ ଉଦୟେ । ୧ ।

ଆଜ୍ଞା ନୋହେ କାଳ ବାସି ମର୍ତ୍ତ୍ୟରେ ଉଦୟେ ଆସି.
ଥିଲେ ପୂର୍ବର ବାସନା ନଷ୍ଟେ ଲଭିବ ସନ୍ଦେହେ । ୨ ।

ସତ୍ୟ ଏହୁ ସଦଗୁରୁ ଦୁବଳୁ କରନ୍ତି ଦାରୁ
ସିଦ୍ଧ ବଚନ ଅଜ୍ଞାରୁ କାହାକୁ ମୋ ନାହିଁ ଭୟେ । ୩ ।

ଏହୁ ପ୍ରଭୁଠାରୁ ଆଉ ନ ଦିଶନ୍ତି ମହାବାହୁ
ତ୍ରିଭୁବନେ ଲୋଡ଼ି ଦେଖ ବଡ଼ ହୋଇ ନାହିଁ କଏ । ୪ ।

ହଡ଼େ ଅବଧୂତ ବାନା ଭଗତଙ୍କ ବଜ୍ରସେହ୍ନା
ନିର୍ବେଦ ଦୀକ୍ଷା ଧାରଣା ବିନ୍ଦୁରେ ଜୟେ ଜୟେ । ୫ ।

ହେଥ କଲ୍ୟାଣ ଆମ୍ଭୂଷ ଯାଉ କାଳ ମୃତ୍ୟୁ ଦୋଷ
ବୋଲେ ଶ୍ରୀମ ଅରକ୍ଷିତ ପିଣ୍ଡ ପ୍ରାଣ ନୋହୁ କ୍ଷୟେ । ୬ ।

( ୩ )

(୩) ଭଜ ରେ ଶ୍ରୀଗୁରୁପାଦ ନ କର ହେଳା ।

ଅଣହେଳା କଲେ ଭବେ ବୁଡ଼ିବ ଭେଳା । ଘୋଷା ।

ପ୍ରଥମ ଜନ୍ମରେ ସୁତ, ମାତା ଗର୍ଭେ ହେଲ ସ୍ଥିତ
ଦଶମାସ ଯାଏ ଗର୍ଭଗତରେ ଥିଲ ।

ଗର୍ଭେ ଥିଲ ଯେତେ ଦିନ, କରୁଥିଲ ବ୍ରହ୍ମେ ଧ୍ୟାନ
ଦେନି କର ଯୋଡ଼ି ପାଦେ ଭଜନ୍ତି ଥିଲ । ୧ ।

ଅବମାରେ ପଡ଼ି ପୁଅ, ରାବ ଦେଲା କୁହଁ କୁହଁ
ପୂର୍ବ ଜନ୍ମ ହେରୁ ଗୋଷ୍ଠୀ ପାସୋର ଦେଲା ।
ମାତା ଦେଲା କ୍ଷୀରପାନ ବାଳ ଖେଳେ ଗଲା ଦିନ
କଉତୁକେ ଶିଶୁ ସଙ୍ଗେ ରଙ୍ଗେ ବଢ଼ିଲା । ୨ ।
ହୋଇଲା ଦ୍ୱିତୀୟ କାଳ ତନୁ ହୋଇଲା ପ୍ରବଳ
ଉପୃତ୍ତିରୁ ଚିତ୍ତ ପଞ୍ଚ ଅଧିକ ହେଲା ।
ପାଇ ଯୁବତୀ ରତନ କାମରେ ବୁଡ଼ିଲା ମନ
ଗୁରୁ ପାଦ ଛାଡ଼ି ମାୟା ମୋହେ ପଡ଼ିଲା । ୩ ।
ତିସ୍ର କାଳ ଆସି ହେଲା ନିରଞ୍ଜନ ନ ଭଜିଲା
ହଂସା ଗଗ ତମେ ନିରନ୍ତରେ ମଜ୍ଜିଲା ।
ଦେଖି ସୁତ ବନ୍ଧୁ ଧନ କ୍ରୋଧରେ ବୁଡ଼ିଲା ମନ
ଦୁର୍ଲ୍ଲଭ ଶରୀର ଗୋଷ୍ଠୀ ବୃଥା ହେଲା । ୪ ।
ହୋଇଲା ଚତୁର୍ଥ ଯୁଗ ସଗଲା ଦେହର ଖେଳ
ଅସ୍ଥି ଚର୍ମ ଏକଠାରେ ଠୁଳ ହୋଇଲା ।
ଫୁଙ୍କା ବନ୍ଧ ହେଲା ନାଶ ଉଡ଼ିଲା ପରମହଂସ
ଗୁରୁ ପାଦ ଧ୍ୟାନ ଖିମ ଖେଳ ଭରିଲା ।

( ୪ )

(୦) ଦୁର୍ଲଭ ଜନ୍ମରେ ଅରେ ଦର୍ଶନ କର

ପଞ୍ଚ ପ୍ରାଣ କାଳ ଜାଲ ନ୍ୟାଇ ଚର । ଘୋଷା ।
ପରଶୁ ପଥର ଖଣ୍ଡେ ଏସେ ପଡ଼ିଛୁ ବ୍ରହ୍ମାଣ୍ଡେ
ଚନ୍ଦ୍ରୋଦ ହେଉଛୁ ହୃଦେ ସମ୍ଭାଳି ଧର ।

ଏହ୍ରୂପର ସ୍ୱଦେହରେ ଆଉ କ ମିଳବ ଅରେ
ମାଳ ଗ୍ରନ୍ଥି ବାନ୍ଧ ରଖ ହୃଦରେ ହାର । ° ।

ଭାଙ୍ଗିଛ ସକଳ ବନ୍ଧ ବନ୍ଧ ଗଲେ ସଙ୍ଗ ସଙ୍ଗ
ଜନ୍ମ ମରଣଟି ଏ ଦେହକୁ ଅସାର ।
।ମୀ ନାମେ ଅହଙ୍କାର ସର୍ବେ କର ଛରନ୍ତର
ତେବେ ଏ ଜନ୍ମ କଷ୍ଟରୁ ହୋଇବ ପାର । ୨ ।

କୋଟିଏ ଯୋନରେ ଜନ୍ମ ହୋଇଣ ଏକ୍ଷୁ ଜୀବନ
ମହାଭାଗ୍ୟେ ପାଇଅଛ ଗୁରୁ ପୟର ।
ଖଣ୍ଡୁଅଛ ମକରନ୍ଦ ଲଭ୍ୟେ କର ପାଦ୍ବନ୍ଦ
ଦବସ ରଜନୀ ବହ ଆସୁଛ ଧାର । ୩ ।

ଭେଦେଉଛୁ ଯାକୁ ହାତ ସକଳ ଏ ପଞ୍ଚଭୂତ୍ୟ
କଦାନ ଜାଳକୁ ସର୍ବେ ହେବ ଅନ୍ତର ।
କୋମଳ ଶରୀର ଅଙ୍ଗ ଅବଶୀ ଏ ନାଶଯିବ
ହେତୁ ତେଭା ଛନ ଧ୍ୟାନ ହେବ ପାସୋର । ୪ ।

ଜଳ ଘଟେ ଯେଉଁ ପର ଏ ଦେହରେ ଅଛ ପୁଣ
କାମ କ୍ରୋଧ ଲୋଭ ମୋହ ବହ ଶବର ।
ଶ୍ରୀଗୁରୁ ଚରଣେ ଧ୍ୟାୟି ଭଣେ ପ୍ରେମଦେବ ଭୋଇ
ନନ୍ଦେରେ ବନ୍ଦୁଅଛ ନୟନୁ ନୀର । ୫ ।

(୪)

(୧) ଅଷୟୁ ଅନନ୍ତ ହେ ଅଜ୍ଞାନରେ ମୁଁ ତ ଦନ ହର

ମାୟା ମୋହ ରୂପ ମଣି ମହାଦୁଖ
ଭୁଲୁଅଛି ଦେବ ନାଲ ନର । ଘୋଷା ।

ଭୁଷଣ୍ଡ ସେ ପକ୍ଷୀ ବେଦ ଶାସ୍ତ୍ର ବାଛୁ
ମ ଅକ୍ଷରକୁ ଚଞ୍ଚେ ଧରି ।
ହୃଦପଦ୍ମେ ଜପ କରି ଏକ ରୂପ
ରହୁଛୁ ବଟେ ଆସନ କରି । ୧ ।
ଅଗସ୍ତି ପୁରୁଷ ଜ୍ଞାନ ଉପଦେଶ
ସହସ୍ର ଯୁଗ ସାଧନ କରି ।
ପାରି ହେଲେ ସିନ୍ଧୁ ପିଇ ସପ୍ତ ସିନ୍ଧୁ
ଅଣାକାରଙ୍କର ଆଜ୍ଞାକାରୀ । ୨ ।
ବାଲ୍ମୀକ ମୁନି ବାଳୁତ କାଳରୁ
ଅବଧୂତ ଦୀକ୍ଷା ଅଗ୍ରେ କରି ।
ଭଜ ଏକାକ୍ଷର ଡିମ୍ବ ଡମ୍ବିର
ଭେଣ୍ଡ କରି ହେଲେ ବ୍ରହ୍ମବୃଷି । ୩ ।
ଶୁକଦେବ ମୁନି ହେଲେ ବ୍ରହ୍ମଜ୍ଞାନୀ
ମାତୃ ଗର୍ଭଜ୍ଞାନ ହେତୁ କରି ।
ମାୟାକୁ ବାହାର ହେଲେ ଯୋଗେଶ୍ୱର
ସିଦ୍ଧ ମୁନି ସବେ ଚଳେ ତରି । ୪ ।
ମାର୍କଣ୍ଡ ଯତି ପ୍ରଳୟ ଉତ୍ପତ୍ତି
ଖପି ଯାଉଥିଲେ ଭବବାରି
ଆଣ୍ଟେ ଦେଲେ ତାଳ ରଖ ହେ ଅଲେଖ
ରଖିଲେ ଧ୍ରୁବ ମଣ୍ଡଳ ପରି । ୫ ।
ଦେଖି ଏତୁ ନ୍ୟାୟ କର୍ମ ଅନ୍ତୁ ଦେହ,
ବାୟୁର ଘାତରେ ତୃଣ ପରି
ବୋଲେ ଭୀମ ଦୀନ ପାମର ଅଜ୍ଞାନ
ପାର କର ଭବସିନ୍ଧୁ-ବାରି । ୬ ।

( ୬ )

(୨) ଶୂନ୍ୟ ସ୍ୱରୂପ ହେ, ଘୋଟିଅଛ ତ୍ରିଭୁବନ ମଝି ।
ସୁଜ୍ଞାନୀ ଜନଙ୍କ ଚକ୍ଷୁରେ ଆଦୃଶ୍ୟ କୁଜ୍ଞାନୀକ ପଥ ଦଶୁନାହିଁ । ଘୋଷା ।

ଆଜ୍ଞାରେ ବାସୁକ ଧରଛୁ ପୃଥୀକି କବା ଦୁଷ୍ଟ ସନ୍ତୁ ଏକ କରି
କାହାକୁ ଅନ୍ତର ଚଢ଼େ ନାହିଁ ତାର ଅଲେଖ ପୁରୁଷ ଦାକ୍ଷା ବନ୍ଧୁ । ୧ ।
ସାଙ୍ଗେର ମଣ୍ଡଳ ଦ୍ୱୀପଦୀର ଖଲ କେତେ ଉପଦ୍ରବ ମର୍ତ୍ତ୍ୟେ ନାହିଁ ।
ଧନ୍ୟ ସେ ପୁରୁଷ ଶୂନ୍ୟ ଅବତରି ଉଦ୍ଧରେ ମାନବ ଦେହ ବନ୍ଧୁ । ୨ ।
ସ୍ୱର୍ଗେ ସୁରପତି ଦିଗପାଳ ଖ୍ୟାତି ଅମାପ୍ତ ଭୁବନେ ବାସ ପାଇ ।
କେ ରଚିଲା ପୁର ହେତୁ ନାହିଁ ତାର ଶଚିସେନ ଭୋଗ କଲା ମଝି । ୩ ।
ବ୍ରହ୍ମା ବେଦବର ଜଗତେ ଅନ୍ଧକାର ଦିବସ ରଜନୀ ସୃଷ୍ଟି ନାହିଁ ।
ବେଦ ଅଧ୍ୟାନରେ ସୃଷ୍ଟି ସର୍ଜ୍ଜନାରେ କୋଟି କୋଟି ଯୁଗ ଗଲା ବନ୍ଧୁ । ୪ ।
ନକ୍ଷତ୍ରାଦିଗଣ ଶଶୀ ଯେ ଅରୁଣ ଚଳୁଛନ୍ତି ସର୍ବେ ଆଜ୍ଞା ପାଇ ।
ଆଜ୍ଞା ବିନୁ ବଡ଼ ଜଗତେ କେ ଗାଢ଼ ଦୁଷ୍ଟ ହୋଇ ଜଣେ ନାହିଁ କେହୁ ॥
ଘଟେ ଘଟେ ଦେଖ ନାହିଁ ରୂପ ରେଖ ଏକରୁ ଅନେକ ସଞ୍ଚରଇ ।
ଭୀମଦେନ ଭୋଇ ପଦ ବଖାଣଇ ଅମନ ମଧ୍ୟରେ ମନ ଥୋଇ । ୭ ।

( ୭ )

(୩) ଶୂନ୍ୟ ବ୍ରହ୍ମକୁ ହେ ଦେଖିବ ଯେମନ୍ତେ ଜ୍ଞାନ ତୋଳେ ।
କଳଣାକୁ କାଟି ଜନ୍ମ ମୃତ୍ୟୁ ମେଣ୍ଟି
ଏ ବୈକୁଣ୍ଠପୁରକୁ ଜିଣିଗଲେ । ଘୋଷା ।
ଅନନ୍ତ ବାସୁକ ଅଷ୍ଟକୁଳାନାଗ ସପତସିନ୍ଧୁକୁ ଡେଇଁଗଲେ ।
ଭେଦ ବ୍ରହ୍ମାଣ୍ଡ ପୃଥ୍ୱ ନବଖଣ୍ଡ, ଅନୁଭବ ସୁଧେ ବୁଝିଥିଲେ । ୧ ।

ତିନି ସତାଇଶ ଏ ଚୌଦ ଭୁବନ ଯେ ଜଣି ପାଶବ ଏକାବେଳେ
କାଳବାସି ନୋହେ ଏକ ବ୍ରହ୍ମପାଦ ସ୍ୱଦେହରେ ମିଳେ ତତକାଳେ । ୨ ।

ଦାରୁ ପ୍ରତିମା ମୂର୍ତ୍ତି ଦେଖି ଦେବତା ସବୁଠାରୁ ଚିତ୍ତ ଛାଡ଼ି ଦେଲେ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଚତୁର୍ବେଦ ସବୁ ଏମାନଙ୍କୁ ଏଡ଼ି ଚାଲିଗଲେ । ୩ ।

ନବଲକ୍ଷ ତାରା ବୈକୁଣ୍ଠ ସୁକୁଣ୍ଠ ମହାକୁଣ୍ଠ ସବୁ ପଛ କଲେ ।
ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ ଏମାନଙ୍କୁ ଟିକେ ନ ଚାହିଁଲେ । ୪ ।

ପଢ଼ିଅଛୁ ବଜ୍ର କିଳଣି କବାଟ ସକାମ ନିଷ୍କାମ ଦୁଇ ମେଲେ ।
କାମନା କଳ୍ପନା ସେଠାରୁ ଛାଡ଼ିଚ ସକାମରେ ନ ପଡ଼ିଲେ ଖେଳେ । ୫ ।

ଠୁଳ ଶୂନ୍ୟ ପରେ ଅମନ ମଧରେ ଲହିଁକ ବଚନ ନାହିଁ ଚଳେ ।
ତରତର ହୋଇ ବୋଲେ ଭୀମଭୋଇ ପଡ଼ି ଶ୍ରୀଗୁରୁଙ୍କ ପାଦତଳେ । ୬ ।

( ୮ )

(୪) ବିନା ଭକ୍ତିରେ ହେ ପ୍ରାପତ ନୁହଇ ସଦଜ୍ଞାନ ।
ଏ ଦୁର୍ଲ୍ଲଭ ତନୁ ଗୁରୁ ସେବା ବିନୁ ବର୍ତ୍ତିବ ସଂସାରେ କେଉଁ ଜନ । ଘୋଷା ।

ହେରୁ ଚେତା ରଖି ଦିଶ୍ରେ ପ୍ରାଣ ଧନ ପଦ୍ମପାଦ ତଳେ ଥିଲେ ମନ ।
ଅନ୍ତେ ଗତି ମୁକ୍ତି କାରଣ ଲଭନ୍ତି ବଳାଗିବ ଯେତେବ ପୂର୍ବ ପୁଣ୍ୟ । ୧ ।

ତର ଭୟ ନିନ୍ଦା ସ୍ତୁତି ହାନି ଲଭ ଏଡ଼ିଲେ ଲଜ୍ଜାନ୍ଧ ମୋହମାନ ।
ଧନ ଦାରାସୁତ ଦୁହିତା ସମର୍ପି ଶ୍ରୀଗୁରୁ ଛାମୁରେ ଦେଲେ ଦାନ । ୨ ।

ଦୁଃଖ ସୁଖ ଫନ୍ଦା ବୃତ୍ତି କର୍ମ ଧର୍ମ ଦେଇ ଖଟିଥିବ ଅନୁକ୍ଷଣ ।
ଚିତ୍ତ ମତି ଚହ୍ନି ଅନ୍ତର୍ଗତେ ଜାଣି ତେବେ ସିନା ହେବେ ସୁପ୍ରସନ୍ନ । ୩ ।

ସଦଗୁରୁ ପାଦେ ଚିତ୍ତ ଅପ୍ରମାଦେ ସେବା କରି ବଞ୍ଚିଥିବ ଦିନ ।
ଆପେ ତରି ଗୃହଜନଙ୍କୁ ତାରିବ ସପତ ପୁରୁଷ ଉଦ୍ଧାରଣ । ୪ ।

ନିଜରୂପେ ହୃଦେ ଆତ୍ମାଜ୍ଞାନ ଭେଦେ ଅନନ୍ତ ଅରୂପ ନାରାୟଣ ।
ସ୍ୱଦେହେ ଭଜିଲେ ସତ୍ୟରେ ମଜ୍ଜିଲେ ନିଷ୍କାମରେ ଫଳଇ ନିର୍ଗୁଣ । ୫ ।

ସେ ଯେ ଅନାଦି ମହାଶୂନ୍ୟ ପୁରୁଷ ଭକ୍ତଙ୍କ ହିତ ଜୀବନ ଧନ
ବୋଲେ ଭୀମଭୋଇ ସେବା ଭକ୍ତି ଦେଇ ଶ୍ରୀଗୁରୁଙ୍କୁ କର ଦରଶନ । ୬ ।

( ୯ )

(୧) ରଖ ନବଖଣ୍ଡ ମଣ୍ଡ ଅନାଦି ଅଲେଖ ତିନି ତୈଲୋକ୍ୟ । ଘୋଷା ।

ରକ୍ଷା କର ସ୍ୱାମୀ ତିରଲୋକ,
ଜରା ଯୁବା ବୃଦ୍ଧ ସ୍ତ୍ରି ପୁରୁଷ ବାଳକ । ୧ ।

କୀଟ ପତଙ୍ଗାଦି ଜଳ ପୋକ,
ଯାକୁ ଯେଉଁରୂପେ କର କାରଣେ ବିବେକ । ୨ ।

ତିରଣ ସ୍ଥାବର ତରୁ ବୃକ୍ଷ,
ଶରଣ ସମ୍ଭାଳି ରଖ ଏ ଜନ୍ମୁ ଜୀବକ । ୩ ।

ଛେଦି ଘୋର କଳିକାଳ ପାପ,
ବ୍ରହ୍ମା ବିଷ୍ଣୁ, ଶିବ ଦଶଦିଗପାଳ ରଖ । ୪

ନାମେ ସଜ୍ଜନଙ୍କୁ କର ମୋକ୍ଷ ।
ସପ୍ତ ଚନ୍ଦ୍ର, ସୂର୍ଯ୍ୟ ନବଲକ୍ଷ ନକ୍ଷତ୍ର-ଙ୍କ । ୫ ।

ଭଣେ ଭୀମ ଅଶିକ୍ଷିତ ମୂର୍ଖ
ଚୌଦ-ବ୍ରହ୍ମାଣ୍ଡ ଧର ଏକୋଇଶ ପୁରକ । ୬ ।

( ୧୦ )

(୨) ଧର ଦୃଢ଼ବନ୍ଧେ ସର୍ବେ ସେହି ସେ କରତା ନ କର ଚିନ୍ତା । ଘୋଷା ।

ଗଢ ପଢ ପ୍ରାଣ ଭକ୍ତହିତା,
ବର୍ଣ୍ଣବନ୍ଧୁ ତାତ ମାତ ସେ ଇଷ୍ଟ ଦେବତା । ୧

ଧନ ଦାର୍ଗ-ଦୂତ ପଡ଼ିଦାତା,
ଛପ୍ପନକୋଟି ଜୀବ ପେଣ୍ଡ ବ୍ରହ୍ମାଣ୍ଡ-ଘଡ଼ନ୍ତା । ୨ ।

କର୍ମ ଧର୍ମ ଦାନ ଧ୍ୟାନ କିତା,
ଜପ ତପ ତୀର୍ଥବ୍ରତ ଉପରେ ଶକତା । ୩ ।

ପୂର୍ଣ୍ଣ ଅଖଣ୍ଡିତ ବ୍ରହ୍ମବେତ୍ତା,
ଭବତଳେ ଯୁଗେ ଯୁଗେ ବୁହାଇବେ କଥା । ୪ ।

କରଉଛନ୍ତି କଷା ବସ୍ତ୍ର ଗୁନ୍ଥା
ସ୍ୱଦେହରେ ହୁଦେ ହୋଇ ପୃଥ୍ୱୀ ଧରନ୍ତା । ୫ ।

ଭଣେ ଭୀମ ହୋଇ ଅରକ୍ଷିତା
ନାମବ୍ରହ୍ମ ଭଜ ସକଳେ ଦୁଃଖ ଘଟେଟା । ୬ ।

( ୧୧ )

(୩) ତାକ ମୁଖେ ସ୍ୱାମୀ ମହିମା ନିଜ ନାମକୁ, ଶୂନ୍ୟ ବ୍ରହ୍ମକୁ । ଘୋଷା ।

ଯୁଗ ଶେଷ ହେଲା ଦେଖୁଁ ଦେଖୁଁ
ଏତେବେଳେ ନ ଲୋଡ଼ିଲେ ନ ମିଳେ ଆଗକୁ । ୧ ।

ଧର୍ମ କେନ୍ଦ୍ର ନାହିଁ ଚହ୍ନିବାକୁ
ଘରେ ଘରେ ଯାଚୁଛନ୍ତି ମୂକତ ପଦକୁ । ୨ ।

ଫିଙ୍ଗି ଦେଉଛନ୍ତି ଅଲଗାକୁ,
ଧନ୍ୟ କଳିଯୁଗେ ଦାନା ହୁଦେ କ ଭାଗ୍ୟକୁ । ୩ ।

ନରେ ନ ଭଜୁଛ ଅଲେଖକୁ,
ସାଧୁ ସୁଜ୍ଞଜନେ ଦୋଷ ନ ଦେବ ପ୍ରଭୁଙ୍କୁ ।

ସବେ ମାଗୁଛନ୍ତି ପଣ୍ଡଷକୁ,
ସାବଧାନେ ସମ୍ଭାଳି ଥାଅ ଏ ପିଣ୍ଡେ ପ୍ରାଣକୁ । ୫ ।

ମୋର ଶକ୍ୟ ନାହିଁ ବର୍ଣ୍ଣିବାକୁ,
ସ୍ୱାମୀ ଦୟା ରଖିଥିବେ ଭୀମ ଅକ୍ଷିତକୁ । ୬ ।

( ୧୨ )

(୪ ଦଅ ପଣଫାଣ ଦାନ, ସମ୍ଭାଳ ଶରଣ, ବନଥ ଘେନ । ଘୋଷା ।
ଖସି ଯାଉଛନ୍ତି ପୃଜ୍ଞଜନ,
ବାରଧୂ ବାନା ଥାଉଁ ନୋହୁଛୁ କାରଣ । ୧ ।
ସର୍ବେ ହୋଇଲେଣି ରଣଭଣ,
ଅନ୍ତର୍ଯ୍ୟାମୀ କର୍ତ୍ତା ବନେ କରଛ ଆପଣ । ୨ ।
ଅଚେତାରେ ହଜିଲାଣି ଜ୍ଞାନ ,
ଦନ ଗଣୁଁ ପିଣ୍ଡ ଛାଡ଼ି ଗଲଣି ପରାଣ । ୩।
କବା ସାଧୂ ସନ୍ଥ ଦୂରୁଜନ,
ଅଖ୍ୟ ଥାଉ ଘୋଟିଲଣି ଅକାଲ ମରଣ । ୪ ।
ପୋଡ଼ି ଯାଉଅଛୁ ତ୍ରିଭୁବନ,
ଜଳବୃନ୍ଦେ ସିଞ୍ଚିବାକୁ ଶ୍ରୀଗୁରୁ ଭଜନ । ୫ ।
ଭଣେ ଭୀମ ଅରକ୍ଷିତ ହୀନ,
ବକଳରେ ଚସୃନ୍ଦର ହେଉଛୁ ଉଚ୍ଛନ୍ନ । ୬ ।

( ୧୩ )

(୧) ସ୍ୱତନ୍ତ୍ର ଶୂନ୍ୟେ ଶବଦ ଅନୁମାନ ଚଢେ ଭେଦ
ଅକଳଣା ବାଗ୍‌ନଧି ନାମ ମହିମା ଅଗାଧ । ଘୋଷା ।
ଗମ୍ୟ ନାହିଁ ଗୁଣଧର୍ମ ଜ୍ୟୋତ ଜାଳା ଊର୍ମି ଧୂର୍ମ
ବହ୍ମା ବିଷ୍ଣୁ ଶିବ ବଣା ଯେମନ୍ତ ସେ ସେଉଁ ପାଦ । ୧ ।

ଯେ ରାମଚନ୍ଦ୍ର ଅନନ୍ତ     କୃଷ୍ଣଚନ୍ଦ୍ର ଜଗନ୍ନାଥ
ଚାରିଯୁଗ ଅବତାରରେ ହୋଇ ନ ପାରିଲେ ସିଦ୍ଧ । ୨ ।
ରକ୍ତ ଶ୍ୟାମ ଯନ୍ତ୍ର ଅର୍ଥ     ହ୍ରୀଁ କ୍ଲୀଁ ଶ୍ରୀଁ ଯୁକ୍ତ
ବଗ ଆକାଶରେ ଭ୍ରମି ଲୋଡ଼ି ନ ପାଇ ବିଷାଦ । ୩ ।
ପୃଥ୍ୱୀ ପଞ୍ଚଭୂତ ବାଇ     ଜ୍ୟୋତି ତେଜ କଳା ବନ୍ଧ
ଚନ୍ଦ୍ର ସୂର୍ଯ୍ୟ ଉଦେ ହୋଇ ନ ପାଇଲେ ଅନ୍ତ ଆଦ୍ୟ । ୪ ।
ଛପନକୋଟି ଜନ୍ତୁ ଜୀବ     କରି ନ ପାରିଲେ ଠାବ
ମୁନି ତପସ୍ୟାରେ ବସି ମନରେ ହେଲେ ତବଦ । ୫ ।
ଅବ୍ୟକ୍ତ ବ୍ରହ୍ମ ଯେନ୍ହ     ରୂପ ରଚନାରେ ନାହିଁ
କହେ ଭୀମ ଅରକ୍ଷିତ ଅନାମେ ରହିଲା ଭେଦ । ୬ ।

( ୧୪ )

(୨) ବନ୍ଧୁଛ ଅଜନା ବାଇ     ଦବା ନସ୍ତି ଏକ ହୋଇ
କେ ପାଇଛ ଆଦ୍ୟ ଅନ୍ତ ଚିହ୍ନି ରଖିଅଛ କାହିଁ । ଘୋଷା ।
ମହାଶୂନ୍ୟ ଶୂନ୍ୟେ ବାଟ     ଅରୂପେ ଅବର୍ଣ୍ଣେ ଭେଟ
ପିଣ୍ଡ ବ୍ରହ୍ମାଣ୍ଡରେ ଭେଦ ଧରି ନପାରିଲେ କେହ୍ନ । ୧ ।
ନାହିଁ ଚେତା ହେତୁ ଦ୍ୱାରେ     ନ ଥାଇ ମନ ଭିତରେ
କାୟା ଛାୟା ମାୟାଠାରେ କାହିଁ କିଛୁ ନ ଲାଗଇ । ୨ ।
କାମନା କଳ୍ପନା ଦ୍ୱାରେ     ନ ମିଶେ ହେଳ ପାଶରେ
ତାଙ୍କୁ କେ କରନ୍ତ ଠାବ ଯାର ନାହିଁ ସ୍ଥାଇ ଛାଇ । ୩ ।
ନ ପଶେ ଶବ୍ଦ ଆକାରେ     ଏକେଶ୍ୱର ପୁରୁ ବାହାରେ
ସାର ବ୍ରହ୍ମ ଏକପାଦ ରହିଛି ଗୁପତ ହୋଇ । ୪ ।

---

୧୩-୭—ମୁକ୍ତ-ପାଠାନ୍ତର, ୧୩—୮, ନ ପାଇଲେ ସ୍ୱାଦ

୧୪-୭—ଠାରେ ନ ମିଶେ ଶବ୍ଦ ଆକାରେ

ସ୍ଥିତ ବସ୍ତିରେ ନ ଥିଲ — କେଉଁ ଭିତରେ ରହିଲ
ତାଙ୍କୁ ଯେ ଭେଟାଇ ଦେବ ତା ପାଦ ଧରିବି ଯାଇ । ୫ ।
ନ ଯେବେ ସେବା ଭଗତ — ଦର୍ଶନ ଭଜନ ନାସ୍ତି
କହେ ଭୀମ ଅରକ୍ଷିତ ନିଗମେ ରହିଲ ଯାଇଁ । ୬ ।

( ୧୫ )

(ଅ ଶୂନ୍ୟ ମଧରେ ବିହାର — ରୂପରେଖ ନାହିଁ ଯାର
ଦୁଇପାଦ ନ ମିଶାଇ ଏକପାଦ ଧର ଧର । ଘୋଷା ।
ଅଲେଖ ପାଟଣା ପୁର — ସେ ଠାବରେ ତାଙ୍କ ଘର
ନାହିଁ ଶବଦ ଉଷ୍ମ ସାଧୁଜନେ ହେତୁ କର । ୧ ।
ନିରମିଷ ନିଅଁଠା — ପିଉଥିଲେ ଲାଗେ ମିଠା
ଅଦେଖା ଅନାମେ ସ୍ୱାଦ ଏମନ୍ତେ ସେ ସୁଧାଧାର । ୨ ।
ଦେଖି ତା ଛଟକ ସ୍ଥଳ — କ୍ଷମା ମଦୁଛନ୍ତୁସ୍ୱଳ
ଚକ୍ଷୁ ମଟକରୁ ବେଗ 'ବିଜୁଳିରୁ ଅତି ଖର । ୩ ।
ତାହାଙ୍କୁ ସେବଣ ଜନ — ନିର୍ବେଦେ କରେ ଦର୍ଶନ
ଅଖଣ୍ଡିତ ବ୍ରହ୍ମେ ଲୀନ ଜନ୍ମ ମରଣରୁ ପାର । ୪ ।
କିସ୍ପା କର୍ମ ନ ଲାଗଇ — ସାଧୁ ସଙ୍ଗ କଲେ ଯାଇ
ଦୀକ୍ଷା ତା ନିଷ୍କାମ ଧର୍ମ ଭଜନ ଏକ ଅକ୍ଷର । ୫ ।
ଯେଉଁଠାରେ ବୃକ୍ଷ ଅଛୁ — ହୃଦେ ଅନ୍ତ ନାହିଁ କିଛୁ
କହେ ଭୀମ ଅରକ୍ଷିତ ନିଗମ ସେ ଅନ୍ଧକାର । ୬ ।

---

( ୧୭ )

(୪) ଅଭମ୍ବପୁର ମଣ୍ଡଳ ନାହିଁ ଅନ୍ଧାର ଉଜ୍ଜ୍ୱଳ
ଅଜପା ଅଲେଖ ବ୍ରହ୍ମ ନାହିଁ ତାଙ୍କ ସ୍ଥିତ ଠୂଳ । ଘୋଷା ।
ନାମ ସନ୍ଧିରେ ଦୁଆଗ୍ନି ଭରସା ଅଛୁ ତାହାର
ନିର୍ଗମସ୍ଥ ବ୍ରହ୍ମ ସେଠୁ କି ମିଳିବ ଅନୁକୂଳ । ୧ ।
ସୁମତ୍ୟ ସନ୍ଧିରେ ଦୀପ ଲକ୍ଷ ଦେବା କେଉଁ ରୂପ
ଅକଳଣା ଅଣାକାର ଆପେ ଆପଣେ ନିର୍ମଳ । ୨ ।
ଧର୍ମ ଯାର ବାମ କରେ ସେ କି ତାହାକୁ ଛୁଇଁରେ
ହେଉଛନ୍ତି ଏତେବେଳେ ବାନା କି ହେବ ବଞ୍ଚଳ । ୩ ।
ସେବା ଯାର ଲଖ କୋଣ ଭକ୍ତ ହେବ କେଉଁ ଜନ
ଯାଉଛି ଦୁର୍ଲ୍ଲଭ ଜନ୍ମ ଆଶ୍ରିତ କର ସକଳ । ୪ ।
ମୁକ୍ତ ଯାର ପୃଷ୍ଠ ସ୍ଥରେ ସେ କି ସ୍ତବ ଭକ୍ତ ମାଗେ
ଅଲେଖ ସେବଣ ପଦ ଅଣା ଆକାରେ କୁଶଳ । ୫ ।
ଏବେ ଯେତ୍ତୁ ବ୍ରହ୍ମ ଦେଖ ବୈଷ୍ଣବ ମୂରତ ରୂପ
କହେ ଶ୍ୟାମ ଅରକ୍ଷିତ ସମସ୍ତେ ଧରିବା ଚୂଳ । ୬ ।

( ୧୮ )

(୧) ପରତେ ହୋଇ ପାଶଲେ ଅଣ ଆକାରେ
ନିଶ୍ଚୟ ଭେଟ ପାଇବ ଅମରପୁରେ । ପଦ ।
ହୋଇ ଥିଲ ଦମ୍ପତ୍ତି କ୍ଷୁଧା ତୃଷା ଅଯୁତକୁ
ଆଶା ଭରସା ସବୁକୁ ପେଷିଲେ ଦୂରେ ।

---

୧୬—୫—ସୁଷୁପ୍ତି ଯାହାର ଦୀପ
୧୭— —ଆ ପ ଆପଣୀ କୁଶଳ
୧୬—୧୦—ତନୁ ଆଶ୍ରିତ ହୃଷ

ଅବାଇ ମଣ୍ଡଳେ ବାଇ ନେଇ ପାରିଲେ ପୂରାଇ
ତେବେ ସେ ପ୍ରବେଶ ହେବ ସ୍ୱାମୀ ଗ୍ରୁମ୍ମରେ । ୧ ।

ପିଣ୍ଡ ପ୍ରାଣ ଚୈତନ୍ୟ କର ଜନ୍ମ ମୃତ୍ୟୁକୁ ନ ଡର
କାଳ ବିକାଳକୁ ନିବାରିବ ନିଷ୍ଠାରେ ।
ବ୍ରହ୍ମ ଅନଳ ଦହୁଡ଼ି ଜାଳ ଫଂଠାଅ କୁହୁଡ଼ି
ଅର୍ଗଳ କବାଟ ଫେଡ଼ି ଯିବ ସଧୀରେ । ୨ ।

ଅବନ୍ଧ ବନ୍ଧରେ ପାଣି ବଳାଅ ଲହଡ଼ି ଟାଣି
ଅରୂପାନନ୍ଦଙ୍କ ପାଦ ଚରଣ ତଳେ ।
ଚିରକାଳ ଥିବ ରନ୍ଧ୍ର ବ୍ରହ୍ମ ଅଙ୍ଗ ତେଜେ ବନ୍ଧ
ଉଲଟ ଉଜାଣି ନଦୀ ସମ୍ପୂର୍ଣ୍ଣ ଭରେ । ୩ ।

ଅମାପ ମାପିଲେ ଯାଇ ଅଖାଦ୍ୟ ପାରିଲେ ଖାଇ
ସାଧୁସଙ୍ଗ କଲେ ପୂର୍ବ ପାତକ ହରେ ।
ଅକଳନ୍ତଣ ବ୍ରହ୍ମେ ଧ୍ୟାନ ଲିପ୍ତ କରି ସ୍ୱଅ ତନ
ବଦଳିଲେ ପିଣ୍ଡ ନୂଆ ନବୀନ ଧରେ । ୪ ।

ଅଦେଖା ଦେଖିଲେ ସାର ଅଜପା ଜପିଲେ ପାର
ଅଚିହ୍ନାକୁ ଚିହ୍ନି ଭଜ ଅଣ୍ଟୁପରେ ।
ତରିବାକୁ ଥିଲେ ଆଶ ନିର୍ବେଦ କର୍ମରେ ପଶ
ସଦଜ୍ଞାନ ମୁକ୍ତପଦ ଗୁରୁ ଦୁଆରେ । ୫ ।

ଅଲେଖ ପୁର ଭୁବନ ନାହିଁ ଚହିଁ ନଜ ସାନ
ସମାନରେ ଦୟା ଦୃଷ୍ଟି ସର୍ବ ଜୀବରେ ।
କହେ ଶ୍ରୀମ ସ୍ୱାନ ଦାସ ଅଜନା ମଣ୍ଡଳେ ପଶ
ନିଶୁଣି ଲଗାଇ ଉଠ ଶୂନ୍ୟ ଶିଖରେ । ୬ ।

---

୧୭—୧୭-ଅମପା ମାପିଲେ ପାର

( ୧୮ )

(୨) ଜାଗିଛନ୍ତି ବ୍ରହ୍ମଅଗ୍ନି ଅଲେଖ କୁଣ୍ଡେ
ଧାପ ଦେଉଛନ୍ତି ଏକୋଇଶ ବ୍ରହ୍ମାଣ୍ଡେ । ଘୋଷା ।

ବ୍ରହ୍ମ ବେଦ ଯାଗ କଲା ଅଧେ ବ୍ରହ୍ମାଣ୍ଡ ରଚଲା
ଗୁପତ ହୋଇ ରହିଛୁ ଆତ୍ମର ଖଣ୍ଡେ ।
ଏକବ୍ରହ୍ମ ରୂପ ଗୋଟି ଗୁରୁ ହିଁ ଚକ୍ଷୁ ଯିବ ଫୁଟି
ଯାହା ମୁଁ ଦେଖିଛୁ କିସ କହିବ ତୁଣ୍ଡେ । ୧ ।

କାଷ୍ଠର ପାଉଁଶ ନାହିଁ ଧୂମ ଧୂଆଁ ନ ଦିଶଇ
ଗୁଡ଼ ଘୃତ ନାହିଁ ହୁତାଶନ ପ୍ରଚଣ୍ଡେ ।
ସାବଧାନ ହେଲେ ଯାଇ ହସ୍ତ ମାର ଦେବେ କହି
ଲଲାଟପଟରେ ଲେଖା ହୋଇଛୁ ମୁଣ୍ଡେ । ୨ ।

ଶବ୍ଦବ୍ରହ୍ମ ନଶ୍ବରରୂପ ସକଳ ଜୀବଙ୍କ ବାପ
ଆସ୍ଥାନ ତଳରେ ସେବା ଭକତ ଛଡ଼େ ।
ବସି ଅଛନ୍ତି ଅନାଦି ଶୂନ୍ୟ ଆସନ ସମାଧି
ଅଟଶବଦେ ପ୍ରକାଶ ଅମନ ଦାଣ୍ଡେ । ୩ ।

ହଜି ଯାଇଅଛୁ ଯିନା ଉଦେ କରୁଅ ବାସନା
ଯେବଣ ସୁକୃତ ଅଛୁ କରମ କାଣ୍ଡେ ।
ନିଗମ ପଥ ଆବୋର ଅସାଧନାରେ ସୁମର
ଧର ଦୃଢ଼ବନ୍ଧେ ଜୀବ ଥାଉ ଏ ପିଣ୍ଡେ । ୪ ।

ଯେଉଁ ଜନ ଭକ୍ତ ତାର ସେହୁ ଜାଣେ ବ୍ରହ୍ମ ସାର
ଶ୍ରୀପାଦତଳରେ ଶିର କମଳ ମଣ୍ଡେ ।
ଅକ୍ଷୟ ବ୍ରହ୍ମରେ ମିଶି ଏକରୂପ ପ୍ରବେଶ ଦିଶି
ତାକୁ କେହି ସର ନୋହେ ତିନି ବ୍ରହ୍ମାଣ୍ଡେ । ୫ ।

ପିନ୍ଧନ୍ତି ବୃକ୍ଷ ବକଳ ନେତେ ଦେଖୁଛ ସକଳ
ଅତିଥି ପ୍ରାୟେ ବୁଲନ୍ତି ଧରମ ଦାଣ୍ଡେ ।
କହେ ଭୀମସେନ ଭୋଇ କେହି ଅନ୍ତ ପାଇ ନାହିଁ
ଘୋଡ଼ାଇ ରଖିଛି ଶୂନ୍ୟ ଗୁପତ ଖଣ୍ଡେ । ୬ ।

( ୧୯ )

(ଓ) ଅଶେଷ ମହିମା ତ୍ରିଭୁବନେ ଖ୍ୟାତ
ନରଦେହ ନହି କେହୁ କହିବ ଅନ୍ତ । ଘୋଷା ।

କେହୁ ମହିମା ଭଜିବ କେବଣ ଭାବେ ମଜ୍ଜିବ
ସତ୍ୟ ତନ୍ତ୍ର ଦୃଢ଼ ବ୍ରତ କେତେ ଶକତ
ଜନ୍ମ ଲଭି ଗଲେ ବହି ଅଗମ୍ୟ ପାର ନୋହି
ସରି ଯାଉଅଛି ଯୁଗ କଳ୍ପ କଳ୍ପାନ୍ତ । ୧ ।
ନୁହଇ ଉଶ୍ୱାସ ବୋଝ ବହିବାକୁ ବଡ଼ ସହଜ
ଆଣିବା ନବାକୁ କେହୁ ଅଛି ସମର୍ଥ ।
ରଥରେ ଯୋଚିଲେ ନେଇ ଠିଆ ହୋଇ ନ ରହଇ
ଅଢ଼ୁଆ ନ ଲଗେ ନୋହେ ଅଳ୍ପ ବହୁତ । ୨ ।
ନୁହଇ ଜାତ ଅଜାତ ନାହିଁ ତାଙ୍କ ସଙ୍ଗ ସାଥି
ଇଷ୍ଟବନ୍ଧୁ ତାତ ମାତ ନ ବସେ ମିତ ।
ଯାର ନାହିଁ ରୂପ କାୟା ତାଙ୍କୁ କି ଲାଗିବ ମାୟା
ନୁହନ୍ତି ସେ ପ୍ରଭୁ ଯୋନି-ଜନ୍ମଜାତ । ୩ ।
ଜଗାତିଆ ହେଲେ ସହି ହୃଦେ ହେଲେ ମହାବାହୁ
ଜାତିଆ କରିବେ ସବୁ ଯେତେ ଭଗତ ।

ବ୍ରହ୍ମ ଅନଳେ ଝାଳିବେ   ନାମ ଜଳେ ପଖାଳିବେ
ନିଶ୍ଚଳା ଆନେ ଧୋଇବେ କରି ନିର୍ମିତ । ୪ ।

ଅଦ୍ରୂଢ ଅମୂର୍ତ୍ତି ଦ୍ୱାର   ବାଛି ବସ୍ତୁର ନ କର
ଅଗମ୍ୟରେ ଗମିଲେ ଲଭିବ ମୁକତି
ପେଲି ପଶିଲେ ଝଂସାଇ   ଦସ୍ତା ହେବ ତେବେ ଯାଇ
ଅନାମିକା ପଦ ନିଷ୍ଟେ ହେବ ପ୍ରାପତି । ୫ ।

ଦୁର୍ଗମ ଘାଷା ଅଛଇ   ହସ୍ତ ଗୋଡ଼ ପାଉ ନାହିଁ
ଗନ୍ତି ପଥ ହର୍ତ୍ତା କର୍ତ୍ତା ଭଗତ ହିତ
କହେ ଭୀମସେନ ହେଇ   ହେ ବୋଲିବ ମିଥ୍ୟା ଏହି
ନାମ ବ୍ରହ୍ମ ପଦ ସ୍ଥିର ଯୁଗରେ ସତ । ୬ ।

( ୨୦ )

(୪) ପାଦ ପାଣି ନାହିଁ ତାଙ୍କୁ ଧରିବ କସ୍ତେ
ଏମନ୍ତ ବ୍ରହ୍ମ ସ୍ୱରୂପ ଦେଖା ନ ଯାଏ । ଘୋଷା ।

ନାହିଁ ତାଙ୍କ ପେଟ ଅଣ୍ଟା   ଫିଟାଇ ବନ୍ଧୁଛି ଗୋଟା
ନର ଦେହ ବନ୍ଧ ତାଙ୍କୁ କଳିବା ନୋହେ
ତାଙ୍କ ପରି ଶାନ୍ତ ପ୍ରାଣ   ତ୍ରିଭୁବନେ ନାହିଁ ଜଣେ
ନିନ୍ଦା ସ୍ତୁତି ହାନି ଲାଭ ସକଳ ସହେ । ୧ ।

ଭକ୍ଷଣ ନାହିଁ ଆହାର   ରଜ ବୀଜରୁ ବାହାର
କ୍ଷୁଧା ତୃଷା କଲେ କ୍ଷୀର ନୀର ନ ଖାସ୍ତେ
ନ ଲାଗଇ ଅଙ୍ଗେ ଧୂଳି   ବର୍ଜି ଦଣଇ ଝଳି
ନିଦ୍ରା ଘୁମାଇଲେ ଉଷ୍ମ ଆସନେ ଶୁଏ । ୨ ।

ଇଚ୍ଛାରେ ଆସନ୍ତି ଭ୍ରମି ଭଗତ ଭାବକୁ ପ୍ରେମୀ
ଶୁଣି ସ୍ତୁହୁଁ ବାକୁ କର୍ଣ୍ଣ ଚକ୍ଷୁ ନ ଥାଏ

ନାହିଁ ମୁଖ ଜିହ୍ୱା ନାସା ଉତ୍ତର ନ ଦୟେ ଭାଷା
ଅଙ୍ଗ ପରୁ ଜାଣି ଧୀରେ ସମୀରେ ବହେ । ୩ ।

ଉଲଟ ପାଲଟ ନାହିଁ ମହାଶୂନ୍ୟ ଶୂନ୍ୟ ଦେଖି
ମୁଖ ବାଟେ ଜିହ୍ୱା କଣ୍ଠେ ବଖାଣି ନୋହେ ।

ସଦା ଜୟ ପୂର୍ଣ୍ଣାନନ୍ଦ ପାଇଲେ ଚରଣେ ବନ୍ଧ
ନିରନ୍ତରେ ଆଜ୍ଞା ଚଜପୁରେ ଉଦୟେ । ୪ ।

ନାହିଁ ତାଙ୍କ ବର୍ଣ୍ଣ ଚହ୍ନ ଅଶେଷ ରୂପରୁ ଭିନ୍ନ
ସକଳ ଧର୍ମ ବିଧାନ କରନ୍ତି ନ୍ୟାୟେ

ଆସିବା ଯିବା ହେଉଛି କରି ସର୍ବ କରାଉଛି
ନିଷ୍କାମ ଯୋଗରେ ନିଜ ନାମକୁ ଥୁଏ । ୫ ।

ସେ ବ୍ରହ୍ମର ତେଜ ଝାସେ ରହି ନ ପାରୁଛି ପାଶେ ।
ଅନୁଭବ ପଦେ ମାତ୍ର କରିଛି ଲୟେ ।

କହେ ଭୀମସେନ ଖେଇ ପୂର୍ବଦିଗେ ଛନ୍ତି ରହି
ଦୁଖ ସୁଖ ଜଣାଇବ ଭେଟିଲେ ପାୟେ । ୬ ।

( ୨୧ )

(୧) କୃପା କର ମହାବାହୁ
ଆଜ୍ଞାରେ କୋଟି ଜନ୍ମ ଦୁଖ ଯାଉ ହେ । ଘୋଷା ।

ଜଗି ବସି କାଳ କରୁଛି ଦୁର୍ବଳ ଯେସନେ ଖାତକ ସାହୁ ।
ସଂସାରସାଗରେ ପଡ଼ି ନିରନ୍ତରେ ବୁଦ୍ଧି ଦିଶୁ ନାହିଁ ଆଉ । ୧ ।
ଘଟେ ଘଟେ ବାସ ଏ କଳା ପୁରୁଷ ତାର ବଡ଼ିମା କେ କହୁ ।
ମାୟାଜାଲ ପ୍ରାୟେ ଢାଙ୍କିଅଛି କାୟେ ସତ୍ୟଧର୍ମ ଥାଉଁ ୨ ଯେ । ୨ ।

ଏ ପିଣ୍ଡ ବ୍ରହ୍ମାଣ୍ଡ ହୋଇ ଖଣ୍ଡ ଖଣ୍ଡ ଦମ୍ଭେ ବଳ୍ପ ନାହିଁ ଆଉ ।
ହବସ ରଜନୀ ପକାଉଛୁ ହାଣି ମାୟା କଲ୍ପଜାଲ ଗନ୍ଥୁ । ୩ ।

ଅବନା ମନରୁ ପ୍ରଭୁ ଶ୍ରୀଗ୍ରମ୍ବରୁ ରକ୍ଷା ଚାରେ ମାଗ ଦେଉ
ନୋହିଲେ କରୁଣା କ୍ଷିପିଯିବେ ପିନା ସମ୍ଭାଳ ଧଣବ କେନ୍ତୁ ଯେ ॥

ଜଗତ ଭଗତ ହେଲେ ବମୋହିତ କୃପା କର ତୁମ୍ଭ ତହୁଁ ।
ଜଣାଇଲି ଯେତେ ଶୁଣ ଶ୍ରୁତିପଥେ ଭକ୍ତବାନା ଯେବେ ବହୁ ଯେ ॥

ଏ କଳିଯୁଗରେ ଉଦ୍ଧାର ନେବାରେ କୃପାରେ ସାଗର ଯେନ୍ତୁ ।
ଭଣେ ଭୀମ ହୀନ ପାମର ଅଜ୍ଞାନ ଗୁରୁପାଦେ ଚିତ୍ତ ରହୁ ଯେ । ୬

( ୬୨ )

(୬) କରୁଅଛୁ ମୁଁ ବିନତି, ଶୂନ୍ୟ ଅଭୟ ପଦ୍ମର ଚକ୍ର । ଘୋଷା ।

ଲଗାଇଛୁ ଲକ୍ଷ୍ୟେ ଗୁରୁ ପଦ୍ମପାଦେ ନ ଜାଣଇ ହବା ଗତି
କଳିଯୁଗ ମୁଁ ତ ନର ଅଙ୍ଗେ ଜାତ ଅଟଇ ଅଳପ ଶକତି । ୧ ।

ନାନାକର୍ମ୍ମ କରି ଚେତା ନ ସ୍ମରି ନୁହଇ ଗୁରୁ ଭଗତି
ଅନୁକ୍ଷଣେ ମୋତେ ସୁମ୍ଭ ନାହିଁ ଚିତ୍ତେ ବିଷୟ୍ୟା ଧନ୍ଦାରେ ମାତି ଯେ ॥

ନ ପଶେ ହୃଦୟେ ନ ଭେଦଇ କାୟେ ନାହିଁ ମୋର ଜ୍ଞାନଗତି ।
କାଳ ଖଡ଼୍‌ଗ କାଟି ପକାଉଛୁ ବାଣ୍ଟି ମନ ପଚିଶ ପ୍ରକୃତି ଯେ । ୩ ।

କଶବଦ ଘରୁ ହୃଦେ ହେଲେ ଗୁରୁ ବ୍ୟକ୍ତ କଲେ ଏ ଧରତି
ସସଂାର ସାଗରେ ବୁଡ଼ ବାନ୍ତରେ ଜଳ ଘୋଟିଅଛି ପୃଥୀ । ୪ ।

ଦେଖ ଦେଖ ପ୍ରଭୁ ପାପକର୍ମ୍ମ ଘୋଟି ହୋଇଲାଣି ଅପକୀର୍ତ୍ତି
ଏ ପିଣ୍ଡ ବ୍ରହ୍ମାଣ୍ଡ ଯେମନ୍ତେ ରହିବ ସ୍ୱରୂ ଛେଦ କର ସ୍ଥିତି ଯେ । ୫

ଅଶେଷ ଭୁବନ ଶୁଣ ସର୍ବଜନ ଡାକ ଦେଉଅଛୁ ନିତି
ଭଣେ ଭୀମ ହୀନ ପାମର ଅଜ୍ଞାନ ଗୁରୁପାଦେ ଦେଇ ମତି ଯେ ॥

( ୨୩ )

(୩) ଦେଖ ସ୍ୱାମୀ ଏ ସଂସାର ହୋଇ ଯାଉଅଛି ନାରଖାର ଯେ । ଘୋଷା ।

ସ୍ଥାବର ଜଙ୍ଗମ କୀଟରୁ ପତଙ୍ଗ
ସର୍ବେ କଲେ ଅବିଗ୍ଭର ।
ଆତ୍ମ ହିଂସା କରି କପଟ ଆଚରି
ହୋଇଲେଣି ପରି ପର ଯେ । ୧ ।

ଛଡ଼ିଣ ପାଟରେ ଅକର୍ମ ବାଟରେ
କଲେଣି ଅଣ ଆଗ୍ଭର ।
ପରଧନ ପରନାରୀ ଦ୍ୱେଷ କରି
ଅସତ୍ୟ କହି ସଞ୍ଚାର ଯେ । ୨ ।

ସର୍ବତ୍ର ପରସ୍ତ୍ରୀ ଆପଣାର ଦେହେ
ବଢ଼ିଲେଣି ପାପ ଭାର ।
ପିତା ଭୁଲେ ଝିଅ ମାତା ଭୁଲେ ପୁଅ
ସୁଖେ କରୁଛନ୍ତି ଘର ଯେ । ୩ ।

ପଣ୍ଡିତମାନେ ଅବିବେକ ହେଲେଣି
ଜ୍ଞାନମାନେ ବେଶ୍ୟାପୁର ।
କେହି କାହାର ଜାତିକୁଳ ନ ରଖି
ହୋଇଲେଣି ଏକାକାର ଯେ । ୪ ।

ଗୁରୁଠାରେ ଶିଷ୍ୟ ହୋଇ ଅବିଶ୍ୱାସ
ମହାଜନମାନେ ସ୍ୱେର ।
ସାଆନ୍ତ ପାଶରୁ ସେବକ ପରାଣୀ
ପଳାଇ ଗଲେଣି ଦୂର ହେ । ୫

ଧର୍ମମାନ ଲଙ୍ଘି ପାଦେ ଶିଖ ଫିଙ୍ଗି
ମିଥ୍ୟା ଜନ୍ମ ନରନ୍ତର ।
କହେ ଭୀମ ଭୋଇ ପିଣ୍ଡ ବ୍ରହ୍ମାଣ୍ଡକୁ
ଦୟାରେ ହୁଙ୍କର ଧର ଯେ । ୬ ।

( ୧୪ )

(୪) କ୍ଷମା କର ଅପରାଧ ଛପ୍ପନକୋଟି ଦୟାରେ ସମ୍ବାଦ ଯେ । ଘୋଷା ।
ପ୍ରକୃତରେ ଜୀବ ପଡ଼ି ଭବାର୍ଣ୍ଣବ ଭକ୍ଷୁଅଛୁ ମାଂସ ମଦ
ଏହାଙ୍କର ଦୋଷ ଧଇଲେ କି ହେବ ଗୁରୁ ତ ପରମ ଆଦ୍ୟ ଯେ । ୧ ।
ଜଙ୍ଗମ ହୋଇ ସେ କିଛୁ ନ ଜାଣନ୍ତି ବେଦ ପୁରାଣର ଭେଦ
ସ୍ୱାଙ୍କୁ କୋପକଲେ କି କାର୍ଯ୍ୟ ହୋଇବ ମନେ ନ ଧର ବିଷାଦ ଯେ ।୨।
ସ୍ଥାବରମାନେ ସେ କେମନ୍ତେ ଜାଣିବେ ପରଂବ୍ରହ୍ମର ସମ୍ବାଦ
ସଂହାରଣ କଲେ କି ଯଶ ରହିବ ଚନ୍ଦରେ ନ କର ଛେଦ ଯେ । ୩ ।
କୀଟପଖାନା କିସ ନାମ ଜାଣନ୍ତି ଲୁଚନ୍ତି ବିଲର ମଧ୍ୟ
ଅଜ୍ଞାନୀ ପ୍ରାଣୀକି କ୍ଷମାଇ ନାଶିବ ଆପେ ବୁଦ୍ଧି ହୁଅ ବୋଧ ଯେ । ୪ ।
ପତଙ୍ଗ ଜାତି କେଉଁ ଭକ୍ତି ଜାଣନ୍ତି ଆକାଶରେ ତାଙ୍କ ନାଦ
ନନ୍ଦେ ।ଷି ଜନଙ୍କୁ ଛାଡ଼ି କର ସ୍ୱାମୀ ଅପାଧିକୁ କର ସାଧ ଯେ । ୫ ।
ଭାସି ଯାଉଛନ୍ତି ତୀରେ ନ ଲାଗନ୍ତି ଅଗାଧ ସାଗର ହ୍ରଦ
ଭଣେ ଭୀମ ହୀନ ପାମର ଅଜ୍ଞାନ ଧାଇଁ ଏକାକ୍ଷର ପାଦ ଯେ । ୬ ।

( ୧୫ )

(୧) ଡାକ ନ ଶୁଣ କିମ୍ପାଇଁ, ଭବସିନ୍ଧୁ ଜଳେ ପଡ଼ି ଭାସୁଅଛୁ ମୁହିଁ ।ଘୋଷା।
ଡାକ ଡାକ ହବା ନଣ୍ଟି କଣ୍ଠ ଶୁଖି ଯାଇ
ଯେସନେ ଚାତକ ପକ୍ଷୀ ତେସନକ ମୁହିଁ । ୧ ।

ନରକେ ଅଶା କରୁଛୁ ହୃଦପଦ୍ମେ ଧ୍ୟାଇ
କର୍ମ୍ମ ନିର୍ଦ୍ଦୟା କରୁଛ ତୈଲୋକ୍ୟ ଗୋସାଇ । ୨ ।

ଯାର ଆଜ୍ଞାରେ କମ୍ପୁଛି ତ୍ରିଭୁବନ ମନ୍ତ୍ରୀ
ଭକ୍ତବତ୍ସଳ ବାନା ଅଛ ପଶ ବନ୍ଧୁ । ୩ ।

ମୂଢ଼ ପାପୀ ଜୀବଆତ୍ମା ରହିଛୁ କର୍ମ୍ମାଇ
କେ ସହୁ ଏତେ କପଣ ମନ୍ତ୍ରୀ ଦେହ ବନ୍ଧୁ । ୪ ।

ଦୁଖୀ ଦୁଖ ଜଣାଉଛୁ ନ ଶୁଣ କର୍ମ୍ମାଇ
ଅଲେଖ ଅବଧୂତ ବାନା କ କରିବ ଥାଇ । ୫ ।

ମୁହିଁ ପାପିଷ୍ଠ ପାମର ଦୁର୍ଜନ ଅଟଇ
ଅପରାଧ କ୍ଷମା କର ବୋଇଲେ ଭୀମ ଭୋଇ । ୬ ।

( ୨୭ )

(୨) ବ୍ରହ୍ମ ହୁଅ ପରକାଶ, ପିଣ୍ଡବ୍ରହ୍ମାଣ୍ଡ ଦୁରିତ ଘଟେଣରେ ନାଶ । ଘୋଷା ।

ଅଲେଖ ଅରୂପ ଅଟ ଶୂନ୍ୟାଦ୍ୟ ପୁରୁଷ
କେଉଁ ପାଦ ସେବା କରି ବୋଲାଇବି ଦାସ । ୧ ।

ନାମ ନାହିଁ ଅନାମିକା ଅବର୍ଣ୍ଣ ଅଦୃଶ
କିରୂପ ଚିହ୍ନିବି ଯାର ମହିମା ଅଶେଷ । ୨ ।

ଅବ୍ୟକତ ନିଶବଦ ନାହିଁ ଚେନ୍ଦ ଲେଶ
କବିକୂଳେ ବର୍ଣ୍ଣିବାକୁ ନ ସ୍ଫୁରେ ସାହସ । ୩ ।

ଇଚ୍ଛାବିହାରୀ କରତା କରୁଣା ବିଳାସ
କି ବୋଲି ଠାବ କରିବି ଭକ୍ତଭାବେ ବଶ । ୪ ।

ସୁଦୟା ହୋଇଲେ ସିନା ହେବ ମୋତେ ଦୃଶ
ଶୁଣ ନଶୁଣ ଗୁହାରି କରୁଛୁ ମୁଁ ଆଶ । ୫ ।

ସତେ ଯେବେ ଅନ୍ତର୍ଯ୍ୟାମୀ ଭଗତ ବିଶ୍ବାସ
କହେ ଶ୍ରମ ଅରକ୍ଷିତ ଜଣାଇବ କସ । ୭ ।

( ୨୭ )

(୩) କର୍ପା ଦେଉଛ କଷଣ,
ମାୟା ମୋହ ଧନ୍ଦେ ପଡ଼ି ହେଲି ଅକାରଣ । ଘୋଷା ।

ନ ଗଲା ପୂର୍ବ ଦୁର୍ଦ୍ଦଶା ଅଭାଗ୍ୟର ଗୁଣ
କେ ଆନ କରିବ ମୋର କର୍ମର ଲେଖନ । ୧ ।

ପୋଡ଼ୁଅଛି ପିଣ୍ଡପ୍ରାଣ ଆଶା ଯେ ସ୍ବପନ
ବେନି ନେତ୍ରରୁ ଅଶ୍ରୁତ ବହେ ଘନ ଘନ । ୨ ।

ଏ ମୃତ୍ୟୁ ଶରୀର ତୋଷା ପୁଷ୍ପକ ଯେମନ
ଭରସା ନ ଦିଶୁଅଛି ହେବାକୁ କାରଣ । ୩ ।

ରଖ ଅଭୟ ଚରଣେ ସମ୍ଭାଳ ଶରଣ
ଗୁରୁଦେବ ଥାଉଁ ଥାଉଁ ହେଲିଣି ମରଣ । ୪ ।

କର୍ମକାଣ୍ଡ ପ୍ରକୃତିରେ ପଡ଼ି ଅନୁକ୍ଷଣ
ଦୋଷ ଅପରାଧ ଖଣ୍ଡି ଦିଅ ପରିତ୍ରାଣ । ୫ ।

ଦିବସ ରଜନୀ ଖିବ ନ ମରିଗ ଦିନ
ଗୁରୁ ପାଦପଦ୍ମେ ଧ୍ୟାୟି ଭଣେ ଶ୍ରମ ଦୀନ । ୬ ।

( ୨୮ )

(୪) ଦୁଃଖ ଜଣାଇବି କେତେ
ଅନ୍ତର୍ଗତରେ କାମନା ଅଛି ମୋର ଯେତେ । ଘୋଷା ।

ରବି ତଳେ ଯେବେ ଜାତ କରିଅଛ ମୋତେ ।
ସତ୍ୟାଦ୍ଧ ବଚନ ମିଥ୍ୟା ହେଉଛି କେମନ୍ତେ । ୧ ।

ଗୃହଧର୍ମ ଗୁରୁବ୍ରହ୍ମ ମିଥ୍ୟା କ ସମସ୍ତେ ।
ଦଇବ କର୍ତ୍ତା ବଚନ ହେଉଛୁ ଅପ୍ରତେ । ୨ ।

ଶ୍ରୀଗୁରୁଦେବ ବଚନ ନ ଛଠେ ଯେମନ୍ତେ ।
ରେଣୁ ପରାଏ କହୁଡ଼ ଯାଉଛୁ ବଅର୍ଥେ । ୩ ।

ପାଷାଣ ହୁଅଇ ପାଣି ଯାର ଆଜ୍ଞାମତେ ।
ଗ୍ରୁର କଷ୍ଟ ଜଣାଉଛୁ ସରା ଅନୁବ୍ରତେ । ୪ ।

ଅନ୍ତର୍ଯ୍ୟାମୀ ଦୟା କର ସୁଦ୍ଧି ଅନ୍ତର୍ଗତେ ।
ଅନ୍ତର ବାହାରେ ସୁକ୍ଷ୍ମ ନାହିଁ କଦାଚିତେ । ୫ ।

କହେ ଭୀମ ଅରକ୍ଷିତ କରଯୋଡ଼ି ମାଥେ ।
ଗୁରୁ ଗ୍ରୁମୁରେ ଇଙ୍ଗାର ଜନପ୍ରାଣୀ ହୁତେ । ୬ ।

( ୨୯ )

(୧) ମନ୍ତ୍ରା ନିବେଦ ଅଟଇ ଏହୁ ଏ ପଥ
ଅନ୍ତର୍ଗତେ ନାମ ଭଜ ହୁଅ ସଚେତ । ଘୋଷା ।

ଧର ଏକାଙ୍ଗ ପସ୍ତର । ତର ଭବକୁ ନିବାର ।
ଧାରଣାକୁ ଦୃଢ଼େ ଧର ହୁଅ ସଚେତ । ୧ ।

ନିଗମକୁ ଧର ବାଛୁ । ଆଉ ବାଞ୍ଛା ନାହିଁ କିଛୁ ।
ଅଛୁ ଯେବେ ସତ୍ୟ ନିର୍ଗୁଣରେ ଭଗତ । ୨ ।

ଯେବେ ଭଜିବ ବ୍ରହ୍ମଙ୍କୁ ପାଷାଣ କର ହୁଆକୁ ।
ଦେଖୁଅଛୁ ପରା ରହୁନାହିଁ ମହତ । ୩ ।

ଏ କଳିଯୁଗରେ ଏକା । ଉଦ୍ଧଏ ମହିମା ଦୀକ୍ଷା ।
କର ସର୍ବେ ଆତ୍ମାଭକ୍ତ ହୋଇ ଏକାନ୍ତ । ୪ ।

ପ୍ରକାଶ ହୋଇଛୁ ଧର୍ମ । ସେହୁଟି ସାକ୍ଷାତେ ବ୍ରହ୍ମ ।
ତାହାଙ୍କ ଆଜ୍ଞାରେ ରକ୍ଷା ଅଛୁ ଜଗତ । ୫ ।
ଶ୍ରୀଗୁରୁ ଚରଣେ ଧ୍ୟାଇ । ଦିବାନିଶି ଚିତ୍ତ ଦେଇ ।
ଭଣେ ପାମର ଅଜ୍ଞାନ ଭୀମ ଅର୍ପିତ । ୬ ।

( ୩୦ )

(୨) ନରଲେ ଭଜ ତରିବ ଭବସଂସାରୁ ।
ନାମ ବହୁ ଆସୁଅଛୁ ଅଣ ଅକ୍ଷରୁ । ପଦ ।
ସୁଖସେଗ ତେଜ୍ୟା କର । ଭୂମି ଆସନେ ବିହର ।
ଜନ୍ମ ମୃତ୍ୟୁ ନଟାର ଏହୁ ଅଙ୍ଗରୁ । ୧ ।
କାମ କ୍ରୋଧ ଲୋଭ ମୋହ । ଛନ୍ଦ ବାଦ ହିଂସା ଦ୍ରୋହ ।
ଆସୁଭ କରାଇ ରଖ ଜ୍ଞାନ ତତ୍ତ୍ୱରୁ । ୨ ।
ଖଟ ମିଛ କଥା ଗୁଡ଼ । ନବେଦରେ କର ଦୃଢ଼ ।
ସେବା କରି ସୁଧାପାନ ପିଅ ପଦ୍ମରୁ । ୩ ।
ସେହୁଟି ପୃଥିବୀ ଚଳ । ଫୁଟି ଯେସନେକ ଫୁଲ ।
ଦଶ ଅବତାର ଅତଯାତ ସେଠାରୁ । ୪ ।
ସତ୍ୟଯୁଗେ ଯେତୁ ମୋକ୍ଷ । ଏତେବେଳେ ତାକୁ ଡାକ ।
ନଷ୍ଟଏ ତରିବ ଶ୍ରୀଗୁରୁଙ୍କ ଦୟାରୁ । ୫ ।
କଳି ଉତ୍ପାତ ହେଲଣି । ଧର୍ମ ଉଜାଡ଼ ଗଲଣି ।
ଭଣେ ଭୀମଭୋଇ ଯାହୁ କର ନନ୍ଦାରୁ । ୬ ।

( ୩୧ )

(୩) ଚେତାରେ ଉଠ ଶ୍ରବଣେ ଶୁଣି ଶବଦ ।
ଗୁରୁବଚନରେ ନାମ ଭଜ ନବେଦ । ଘୋଷା ।

ମାୟା ମୋହ ତେଜ ବେଗେ । ସାବଧାନ ହୁଅ ସର୍ବେ ।
କଳିଯୁଗ ଭୟ ଦେଖି ନୁହ ତବଦ । ୧ ।

ତୁମ୍ଭେ ଅବା ବୋଲୁଥିବ । ଅକାରଣ ହେବ ଜୀବ ।
ସତ୍ୟ ଧର୍ମ ଏହୁ ଅଟେ ନୁହ ଅବୋଧ । ୨ ।

ଗରବତା ନାହିଁ ବୁଦ୍ଧ । ଗୁଞ୍ଜ ଯିବ ନିଜ ଦେହ ।
ଗୁରୁ ମୁକ୍ତିଦ୍ୱାରେ ନ କର ନା ବିବାଦ । ୩ ।

ଡାକୁଛି ମାୟା କୁହୁଡ଼ି । ଶତେ ପୁର କଣ ବେଢ଼ି ।
ଏକା ଭବସକେ ଲଭିବ କି ସେ ପଦ । ୪ ।

ଅନାମିକା ପଦ ଯେଚି । ପୁଷ୍ପ ପ୍ରାପ୍ତେ ଅଛୁ ଫୁଟି ।
ବାସ କରୁଅଛୁ ଭଜନପୁରେ ଆମୋଦ । ୫ ।

ଭଜ ବ୍ରହ୍ମାଣ୍ଡରୁ ଆସି । ଖଟିଚନ୍ଦ୍ର ଦାସ ଦାସୀ ।
ଭଣେ ଶ୍ରୀମନ୍ତଙ୍କର ହୃଦେ ଜାଗ ସମ୍ବାଦ । ୬ ।

( ୩୧ )

(୪) ଧର ନିର୍ବେଦେ ନାମକୁ ଭାସି ନ ଯିବ,
ଗୁରୁ ଦୟା କଲେ ଜୀବ ମୁକ୍ତି ପାଇବ । ଘୋଷା ।

ମନ୍ଦା ଅଧର୍ମ ହେଉଛି, କାର ଚେତା ନ ରହୁଛି,
ମନ୍ଦମା ଭଜିଲେ କଳିଯୁଗ ଦଣ୍ଡିବ । ୧ ।

କାହିଁରେ ନାହିଁ ନା ଫଳ, ବ୍ରହ୍ମକୁ ଭଜ ସକଳ,
ସ୍ୱାମୀ ସେବାକଲେ ପିଣ୍ଡ ପ୍ରାଣ ତରିବ । ୨ ।

ତପ ପୂର୍ଣ୍ଣ ହୋଇଲାଣି, ସତ୍ୟ ନିକଟ ହେଲାଣି,
କଳି ସତ୍ୟ ଦୁହିଁଙ୍କର ଭେଟ ପଡ଼ିବ । ୩ ।

ଅନାଦି ମଣ୍ଡବେ ସଭା, ଯାର ଜ୍ଞାନ ଲଭ ହେବା,
ଯାକୁ ସଉଁରୂପେ କରାଇବେ ସଂଯୋଗ । ୪ ।

କଳିଯୁଗ ଦୁଷ୍ଟପଣ, ଲାଗିଅଛୁ ନଷ୍ଟକୂଟ,
ନିନ୍ଦା ଗର୍ବ ଗାଳି ଯେତେ ସହୁ ପାରିବ ।୫।
ଭଣେ ଭୀମସେନ ଭୋଇ, ଶ୍ରୀଗୁରୁଚରଣେ ଧ୍ୟାୟି,
ନାମ ଭଜିଥିବ ଯେତେ ଯେତେ ତରିବ ।୬।

( ୩୩ )

(୧) ଭଜ ନାମ ବ୍ରହ୍ମଙ୍କ ରଖ ସମ୍ପାଦ । ଘୋଷା ।

ଆତଯାତ ହେଉଛ, ଜନ୍ମ ମୃତ୍ୟୁ ନାହିଁଛ,
ଆସୁଛ ଯାଉଛ, ଦେଖା ନ ଦେଉଛ,
ବନ୍ଧୁଅଛ ଯେସନକ ନଦୀ ।୧।
ଜଳ ପବନେ ଦେହ, ଅଛ ସ୍ଥିତ ଅଥୟ,
ଖେଳୁଅଛ ଅଟଙ୍ଗ, ନ ମିଶି କା ସଙ୍ଗେ,
ଶବ୍ଦରେ ଶବ୍ଦରୂପେ ଭେଦ ।୨।
ପବନର ସଂଯୋଗ, ଅଣ୍ଡବ୍ରହ୍ମ ଅମୂର୍ତ୍ତି,
ନଅର ଆକାରେ, ନ ଦିଶେ ନୟନରେ,
ଆଦି ଅନ୍ତ ନାହିଁ କ୍ଷୟ ବୃଦ୍ଧି ।୩।
ରୂପ ମଧ୍ୟେ ଅରୂପ, ଅଛ ବ୍ରହ୍ମସ୍ୱରୂପ,
ପାର ଯେବେ ଚହ୍ନି, ଘଟେ ଧର ଆଣି,
ଅଲେଖ ଅବଧୂତ ସତ୍ୟବାଦୀ ।୪।
ଅସ୍ତରେ ନ ରହିଛ, ବ୍ରହ୍ମାଣ୍ଡକୁ ବନ୍ଧିଛ,
ନିର୍ଗୁଣରେ କାୟା, ଲକ୍ଷ୍ମୀଛନ୍ତି ମାୟା,
ଦେଖ କରୁଛନ୍ତି ସର୍ବସିଦ୍ଧି ।୫।

---

ପାଠା— ୨ ଜନ୍ମ ମୃତ୍ୟୁ ଲଗିଛ,

ନିଷ୍କାମରେ ବିହର, ଅଗଡ଼ାରେ ଡିଆର,
ଭଣେ ଭୀମ ଭୋଇ ସେ ପ୍ରଭୁଙ୍କୁ ଧ୍ୟାଇ,
ସାରସ୍ୱତ ବ୍ରହ୍ମ ସେ ଯେ ଅନାଦି । ୬

( ୩୪ )

(୨) ମୂଳ ଶୂନ୍ୟ ଘରକୁ କର ବିବେକ । ଘୋଷା ।

ନିଶବ୍ଦ ସେ ଭୁବନ, ଘୁ ଘୁ ନାଦ ଗର୍ଜନ,
ଅଗାଧ ସାଗର, ନାହିଁ ତହିଁ ନୀର,
ପୂରି ରହିଅଛି ହୃଦ ପଙ୍କ । ୧ ।

ନ ପଡି ପୃଷ୍ଠ ବେଢ଼ି, ସ୍ଥିର ଦୁଆରେ ଖେଳ,
ମହା ନିତ୍ୟ ଭୂଇଁ. ଠଲ ଠଲ ନାହିଁ,
ପାଦ ଘାତେ ପଡୁଅଛି ଚମକ । ୨ ।

ଜଣେ ଜଣେ ସୁବେଶ, ନ ଥାଇ ଝୀନବାସ,
ଚୌଷଠି ବନ୍ଧରେ, ନୃତ୍ୟ ସେ ମଧ୍ୟରେ
ନ ବାଜଇ ଢୋଲ ଦମା ଝମକ । ୩ ।

ମଧ୍ୟେ ପ୍ରଭୁ ବିଜୟେ, ଅନାମେ ରଖି କାୟେ,
ଅଲେଖ ମହିମା, କି ଦେବ ଉପମା,
ଆଶ୍ରେ କଲେ ଖଣ୍ଡୁଅଛି ପାତକ । ୪ ।

ବାମ ଡାହାଣ କରି ଜନ୍ମ ମୃତ୍ୟୁ ଖଣ୍ଡନ୍ତି,
ଅକ୍ଷୟ ପୁରୁଷ, ଭକ୍ତ ସବେ ଦୃଶ୍ୟ,
ଖାଇଛନ୍ତି ଅମଳକୀ କଳପ । ୫ ।

ଏକାକ୍ଷର ନିର୍ବେଦ, କ୍ଷର ଅସ୍ପୃଷ୍ଟ ପଦ,
ବସ୍ତୁ ନିରୂପଣ, ହୋଇଛି ସେ ସ୍ଥାନ,
ଭଣେ ଭୀମ ଧ୍ୟାନ ବାଇ ମୁରୁଖ । ୬ ।

( ୩୬ )

(୩) ଦିଶ ଦିଶ ଅନନ୍ତ ଅବ୍ୟ ମୂରତି । ଘୋଷା ।

ରୂପ ମଧ୍ୟେ ନ ଗଛେ, ଲଗିଛୁ ଆଗ ପଛେ,
ବାମ ଡାହାଣରେ, ଭିତର ବାହାରେ,
ଜ୍ଞାନନେତ୍ରେ ଦେଖି କର ପୀରତି । ୧ ।

ଅମନ ମଣ୍ଡଳରେ, ଧରି ଏତେବେଳରେ,
ନ ଦେଉଛୁ ଧରା, ଯେସନେ ଭ୍ରମରା,
ଅନୁମାନ ମାର୍ଗେ କର ସୁରତି । ୨ ।

ନିଗମ ଘରେ ପଶ, ହେବ ଯେମନ୍ତେ ଦାସ,
ନ ଧରିଲେ କର୍ମ, ଭେଟିବ ସେ ବ୍ରହ୍ମ,
ତେବେ ସେ ପାଇବ ଗତି ମୁକତି । ୩ ।

ସଦା ବ୍ରହ୍ମ ଅଙ୍ଗରେ, ନିତ୍ୟ ଥିବ ସଙ୍ଗରେ,
ଗୁରୁ ଶିଷ୍ୟ ସେଥି, ବାରଣ ନ ଯାନ୍ତି,
କଟିଯିବ ଜନ୍ମ ମରଣ ବିପତ୍ତି । ୪ ।

ଝରୁଛୁ ଗୃହଯୁଗେ, ଫଳ ଶୂନ୍ୟର ଭୋଗେ,
ଦେଉଛନ୍ତି ଛଳ, ଯେସନ୍ତେ ମଧୁଫଳ,
ଛଡ଼ାଇ ଅଲଗା ହୋଇ ଅଛନ୍ତି । ୫ ।

ଭଣେ ଭୀମ ଅକ୍ଷିତ, ନ ପାଇ ଆଦ୍ୟ ଅନ୍ତ,
ଧରିଛୁ ପଦ୍ମର, ହେବାକୁ ଉଦ୍ଧାର,
ଏବେ ସେ କରତା ବିଜେ ଧରତି । ୬ ।

( ୩୬ )

(୪) ନିର୍ଝରରୁ ଝରୁଛି ସୁଧା ମଧୁର । ଘୋଷା ।

ଜାଗି ପାରିଲେ ବସି, ତହିଁ ଦ୍ରବି ଆସୁଛି,
ଥିଲେ ପୂର୍ବ ଭାଗ୍ୟ, ତେବେ ସେ ପାଇବ,
ଗଳୁଅଛି ଏକ ପାଦବନ୍ଦର । ୧ ।

ରାତି ଦିବସ ଖାଇ, କେବେ ତୃଷା ନ ପାଇ,
ଅଧିକରେ ସ୍ୱାଦୁ, ସୁଧାପାନ ମଧୁ,
ପିଇ ତୋଷ କର ଉଦର । ୨ ।

ଅମର ମକରନ୍ଦ, ଅଛନ୍ତି ଭଲ ମନ୍ଦ,
ଦୁର୍ଗମ ସେ ପଥ, କର ଦୃଢ଼ ବ୍ରତ,
ପଶି ପାରିଲେ ଅଗମ୍ୟ ଭିତର । ୩ ।

ଏ ପିଣ୍ଡ ନ ପଡ଼ିବ, ହେତୁ ବୁଡ଼ି ନ ଯିବ,
ଗୁରୁ ଆଜ୍ଞା ବନ୍ଧ, ଲେଖ ପ୍ରାପ୍ତ ହୋଇ,
ସାକ୍ଷୀରୂପେ ଦେଖୁଥିବ ସଂସାର । ୪ ।

ସ୍ୱ ଘଟରେ ସେ ପଶିବ, ଶାସ୍ତ୍ରାର୍ଥ ଦିଶିବ,
ବ୍ରହ୍ମର ଭୁବନ, ନାହିଁ ରାତ୍ର ଦିନ,
ନ ପଡ଼ିବ ଜନ୍ମମୃତ୍ୟୁ ସାଗର । ୫ ।

ମହାଶୂନ୍ୟ ମଣ୍ଡଳୁ, ବହୁଛି ସେଠାବରୁ,
ଲାଗିଅଛି ଧାରା, ନିଗମରୁ ପରା,
ଭଣେ ଖେମ ଅଗାଧ ସେ ସାଗର । ୬ ।

( ୩୭ )

(୧) ମନର ଭିତରେ କଲେ ଭଗଣ ଗୋ ।
ଅନ୍ତର୍ଯାମୀ ଗୁରୁଦେବ ଜାଣନ୍ତି ଗୋ । ଘୋଷା ।

---

୩୭—୨-ଅନ୍ତର୍ଯାମୀ ଗୁରୁସ୍ୱାମୀ

ନାମକୁ ଭଜଲେ ଚକ୍ରି ପାଷାଣ ହୁଅଇ ପାଣି,
କାଷ୍ଠ ପଲ୍ଲବନ୍ତ ଗୋ, କୁସୁମ ଫୁଟନ୍ତ,
ଥିଲେ ପୂର୍ବର ବାସନା, ଗୁଣ ତାର ପଡ଼େ ଚହ୍ଲା,
ମୂକ ଜଡ଼ା ସ୍ତୁତିବେଦ କହନ୍ତ ଗୋ । ୧ ।

ମୂର୍ଖେ ହୁଅନ୍ତ ପଣ୍ଡିତା, ପାନ୍ତ ଜ୍ଞାନ ହେତୁ ଚେତା,
ବାନା ଉଡ଼େ ପୃଥ୍ୱୀ ଗୋ, ବଢ଼ିଲେ କୀରତ,
ଅନୁଭବ ଥିଲେ ବୁଦ୍ଧି, ବ୍ରହ୍ମକୁ ପା ଇ ସାଧି,
ପ୍ରାପତ ହୁଅଇ ଗତ ମୁକତ ଗୋ । ୨ ।

ଅନ୍ଧାର ଘରରେ ନଇ, ବିନା ତଇଲରେ ବତ,
ଲଗାଇ ପାରନ୍ତ ଗୋ, ନିଷ୍ଠା ଥିଲେ ମତ,
ଆଉତେ ଭଜିଲେ ନାମ ଦଣ୍ଡି ନ ପାରଇ ଯମ,
ପଙ୍ଗୁ ଗିରବର ଲଙ୍ଘି ଯାଆନ୍ତ ଗୋ । ୩ ।

ଅକର୍ମରୁ କର୍ମ ଉଦେ, ଗମନ୍ତ ଅନାମ ବେଦେ,
ଛୁଟେ ଭବ ଭ୍ରାନ୍ତ ଗୋ, ନ ପଡ଼େ ବିପତ୍ତି,
କାମନା କଳ୍ପନା ଇଚ୍ଛା, ପୂର୍ଣ୍ଣ ହୁଏ ମନବାଞ୍ଛା,
ଅବଶ୍ୟ ସେ ଫଳ ବସି ଭୁଞ୍ଜନ୍ତ ଗୋ । ୪ ।

ନଣବ ଘଟୁ ଶବଦ, ଜନ୍ମ ହୋଏ ସ୍ତୁତିବେଦ
ମହିମା ଜାଣନ୍ତ ଗୋ, ଶାସ୍ତ୍ରେ ବଖାଣନ୍ତ,
ଲାଗିଥାଇ ବସ୍ତୁ ତେଜ, ପଣ୍ଡିତ ସୁଜ୍ଞାନୀ ବୃନ୍ଦ,
କବକୃତ କର ପଦ ଯୋଡ଼ନ୍ତ ଗୋ । ୫ ।

---

୩୨—୨—ଗବ ଜଡ଼ା ସ୍ତୁତିବେଦ

ଅନ୍ତର୍ଗତ କଥା ସବୁ, ଜାଣନ୍ତି ଅଲେଖ ପ୍ରଭୁ,
ସର୍ବଠାରେ ଥାନ୍ତି ଗୋ, ଲୁଚେ ନ ଦିଶନ୍ତି,
କହେ ଗ୍ରାମ ଅରକ୍ଷିତ, ନିଶ୍ଚୟେ ବୁଝିଲେ ତତ୍ତ୍ୱ
ଲକ୍ଷେ ଯୋଜନରେ ଥିଲେ ଶୁଣନ୍ତି ଗୋ । ୬ ।

( ୩୮ )

(୨) ନିରନ୍ତରେ ଭଜୁଥାଅ ନାମକୁ ଗୋ
ଛାଡ଼ ପୁତ୍ର ବନ୍ଧୁ ଦାର ଧନକୁ ଗୋ । ଘୋଷା ।

ଏ ସେ ବ୍ରହ୍ମ ଜ୍ଞାନ ତତ୍ତ୍ୱ, ଏ ଜୀବ ଆତ୍ମାକୁ ହିତ,
ଆସଇ ମନକୁ ଗୋ, ସୁଜ୍ଞାନ ଜନକୁ,
ପଚଶ ପ୍ରକୃତି ମାର, ମନ ପବନରେ ଭର
ଧରିଥିବ ମନ ଧ୍ୟାନ ଯୋଗକୁ ଗୋ । ୧ ।

ଏତେବେଳେ ଥିଲେ ବସ୍ତୁ, ନିଶ୍ଚୟେ ରଖିବେ ପନ୍ଥ,
ଆଗତ ଦିନକୁ ଗୋ, ଭଗତମାନଙ୍କୁ,
ପୃଥ୍ୱୀ ହୋଇଲେ ହସ୍ତକ, ଶୂନ୍ୟରୁ ପଡ଼ିବ ଡାକ,
ଡେରିଥିବ ବାମ କର କର୍ଣ୍ଣକୁ ଗୋ । ୨ ।

ଅମଡ଼ା ଅପୋଡ଼ା ଭୂଇଁ, ଚନ୍ଦ୍ର ସୂର୍ଯ୍ୟ ଗମ୍ୟ ନାହିଁ,
ଲୋଡ଼ ସେ ସ୍ଥାନକୁ ଗୋ, ସୁମର ଗୁରୁଙ୍କୁ,
ଚାଖମନ କଲେ ତହୁଁ, ପାଇବ ପୂର୍ବର ହେତୁ,
ସ୍ମରଣ ହୋଇକେ ଦାସପଣକୁ ଗୋ । ୩ ।

ଗମି ପାରିଲେ ସେପୁର, ଯୁଗ ଯୁଗାନ୍ତେ ଅମର,
ଛେଦଇ ଭସ୍ମକୁ ଗୋ, ଭେଦଇ ଜ୍ଞାନକୁ,
ସୁଜନେ ନ ଦେବା ଦୋଷ, ଶ୍ରୀଗୁରୁ ଆଜ୍ଞାରେ ଦୃଶ୍ୟ
ସେଠାରୁ ଫିଟିଛି ବାଟ ଶୂନ୍ୟକୁ ଗୋ । ୪ ।

ବହୁଛି ବସନ୍ତ ତହିଁ   କ୍ଷୁଧା ତୃଷା ବାଧା ନାହିଁ,
ସୁକ୍ଷ୍ମ ଏ ପିଣ୍ଡକୁ ଗୋ,   ଅକ୍ଷୟ ଏ ଜୀବକୁ,
ଶବ୍ଦ ବ୍ରହ୍ମଜ୍ଞାନ ଏହ,   ଧନ ତ୍ରୈଲୋକ୍ୟେ ନ ପାଇ
ହୃତକୁ ଆସର ଜ୍ଞାନଜନକୁ ଗୋ । ୫ ।

ବ୍ରହ୍ମ ଲୋକଙ୍କର ନାଗ,   ତହିଁକି କରନ୍ତି ଆଶ,
ବଶ୍ୱର ମନକୁ ଗୋ,   ନ ଭଜି ଆନକୁ,
କହେ ଗ୍ରାମ ଅବକ୍ଷିତ   ଶ୍ରୀଗୁରୁ ଯେମନ୍ତେ ସତ୍ୟ
ଭାଗ୍ୟ ଥିଲେ ଯିବ ତପୋବନକୁ ଗୋ । ୬ ।

( ୩୪ )

ମନ ନିଷ୍କାମେ କଲେ ଦର୍ଶନ ଗୋ ।
ନିଶ୍ଚୟେ ହୋଇବେ ଗୁରୁ ପ୍ରସନ୍ନ ଗୋ । ଘୋଷା ।

ମନକୁ କର ନିଶ୍ଚଳ,   ଧ୍ୟାନ ଦେଇ ପଦତଳ,
ଆଗକୁ ଥୋଇଲେ ନେଇ ମରଣ ଗୋ ।

ଏ ନବ ଖଣ୍ଡ ମେଦନୀ,   କର୍ମ ଥିବ ପୂର୍ବ ଧନ
ତାହାକୁ ଯିବ ଶୂନ୍ୟ ଆସନ ଗୋ । ୧ ।

ଅଳପ ନୁହଇ କଥା   ବୁଡ଼ିଯାଏ ହେତୁ ଚେତା
ତେଜି ଭଜ ଯେହ୍ନେ ହେବ ସମାନ ଗୋ ।

ଏ ଅଟେ ନିର୍ବେଦ ପଥ   ଜାଣି ବୁଝି ବଧିମତ,
ଦେହ ଜୀବନେ କଲେ କିଣ ଗୋ । ୨ ।

ସାର ଏ ମହିମା ଦୀକ୍ଷା   ଧର ଗୁରୁ ମନ୍ତ୍ର ଶିକ୍ଷା,
ସେବା ଭକ୍ତି କର ପଶ ଶରଣ ଗୋ ।

ଲାଗାଇଲେ ତନ ମନ   ନାମ ବ୍ରହ୍ମେ ହେବ ଲୀନ
ତେବେ ଏ ଜୀବକୁ ଅଛି କାରଣ ଗୋ । ୩ ।

ହୃଦେ ହୋଇଛୁ ପସ୍ୱର ପ୍ରଭୁ ଭକ୍ତେ ଧର ଧର
ହୃଦପଦ୍ମେ ଭାବ ରଖ ଯତନେ ଗୋ ।
ସକଳ ଦୀକ୍ଷାରୁ ଉଚ୍ଚ ନବେଦ ହୋଇଛୁ ଗଚ୍ଛ
ଭଗଦ୍ଦି ମଧ୍ୟେ ସାର ରଚନ ଗୋ । ୪ ।

ଦାରା-ସୁତ ବନ୍ଧୁ ଛାଡ଼ି ନତ୍ୟେ ସାଧ ଦୁଖ ପଡ଼ି
ଥିଚ ଫନ୍ଦା ଛାଡ଼ି ଜିହ୍ୱା ରସନା ଗୋ ।
ନୀଚ ଜନ ପ୍ରାପ୍ତେ ହୋଇ ଅନୁସରିଥିଲେ ସନ୍ଧ୍ୟ
ତେବେ ମିଳୁଛୁ କଷ୍ଟାବସନ ଗୋ । ୫ ।

ବୋଲେ ଭୀମ ଅରକ୍ଷିତ ଶ୍ରୀଗୁରୁଚରଣେ ଚିତ୍ତ
ଭାଷେ ସୁଧା ମୃଦୁବାଣୀ ବଚନ ଗୋ ।
ଦସ୍ୟାକର ସାଧୁ ସଙ୍ଗେ ପଡ଼ିଅଛୁ ପାଦଗତେ
ଅଲେଖ ପ୍ରଭୁଙ୍କର ନନ୍ଦନ ଗୋ । ୬ ।

( ୪୦ )

(୪) ଭଗତ ଜୀବନ ପ୍ରାଣପତି

ନିଜରୂପେ ବିଜେ କରିଛନ୍ତି ଦେଖି ଦେଖି ନ ପାରୁଛୁ ଚେତ ଗୋ । ଘୋଷା ।

ନୁହନ୍ତି କଳା ଧବଳା । ରଙ୍ଗ କୁଙ୍କୁମ ପିଙ୍ଗଳା ।
ନାହିଁ ଦବା ଗତି ଗୋ ନ ଭେଦେ ତ୍ରିକୁଟ ।
ଯାର ଥିବ ଜ୍ଞାନ ଅଖି । ସେ ଧନା ପାରିବ ଦେଖି
ରୂପ ଜାଜୁଲ୍ୟମୟ ତା ଜ୍ୟୋତି ଗୋ । ୧ ।

ଯେ ଅନନ୍ତ କୋଟି ସାଧୁ । ଚଉଷଠି ସିଦ୍ଧ ବଧୂ ।
ସ୍ଫୁରେ ଭଜୁଛନ୍ତି ଗୋ ଅବଧୂତ ମୂର୍ତ୍ତି ।
ବନ୍ଧୁଛନ୍ତି ବାନା ଭେକ । ବେନ ତୋଳେ ଦେଖ ଦେଖ ।
ଗଣ୍ଡିଛନ୍ତି ପ୍ରଭୁପାଦ କଣ୍ଠ ଗୋ । ୨ ।

ବେଦ ବ୍ରହ୍ମା ବିଷ୍ଣୁ ଲୋକ । ବ୍ରଜବାଳ ବେଦାନ୍ତକ ।
ଲଢ଼ିବେ ମୁନିଙ୍କ ଗୋ । ଖଣ୍ଡିବେ ଦୁର୍ଗତି ।
ଲଗିଥଇ ବ୍ରହ୍ମକଳା । ନାଶନ୍ତି ପ୍ରଭୁଙ୍କ ଲୀଳା ।
ଏତେ ଲୋକ ବ୍ରହ୍ମଙ୍କୁ ଜାଣନ୍ତି ଗୋ । ୩ ।

ମୁନି ବ୍ରହ୍ମା ବିଷ୍ଣୁ କନ୍ୟା । ସତୀ ପଦରେ ଗଣନା ।
ଗୋପିନୀ ବେଦାନ୍ତୀ ଗୋ । ପଦ୍ମିନୀ ସୁଜାତ ।
ଜନ୍ମିଥାନ୍ତି ସୁକୃପାରୁ । କଷ୍ଟାମ ଭଗତ ଘରୁ ।
ଏତେ କନ୍ୟା ବ୍ରହ୍ମଙ୍କୁ ଜାଣନ୍ତି ଗୋ । ୪ ।

ତେତିଶକୋଟି ଦେବଗଣେ । ଥାଇ ଅଧାସ୍ୱର୍ଗ ଶୂନ୍ୟେ ।
ଏକ ମୁଖେ ଦୃଷ୍ଟି ଗୋ । ହଜାରେଣ ସ୍ତୁତି ।
ବଜାଇ ଦୁନ୍ଦୁଭି ବାଦ୍ୟ । ଦେଇ ଜୟଶଙ୍ଖ ନାଦ ।
ଓହ୍ଲାଇ ଆସିବେ ଏ ଧରିତ୍ରୀ ଗୋ । ୫ ।

କଳିଯୁଗ ଧୂର୍ତ୍ତ ପଣ । ଆସି ହେଲଣି ନିକଟ ।
ଶୁକ୍ଳବର୍ଣ୍ଣ ମୂର୍ତ୍ତି ଗୋ । ଦଖିବ ଏ ପୃଥ୍ୱୀ ।
ଭଣେ ଭୀମ ଅଲେଖିତ । ଏ ବାକ୍ୟ ଘୋଷିଲେ ସତ୍ୟ ।
ଆଦ୍ୟ ଧୂର୍ତ୍ତ ତାରି ଧାଡ଼ି ରହନ୍ତି ଗୋ । ୬ ।

( ୪୧ )

(୧) ନର ମାନୁଷ ନୋହ୍ଵ । ଅପରତେ କହୁଅଛ କପାଇଁ । ଘୋଷ
ସାକ୍ଷାତେ ସେ ବ୍ରହ୍ମ, ଅକାକାର ନାମ, ସବେ ପାଇବେ କାହିଁ ।
ବାହ୍ୟ ସଂସାରକୁ, ଏ କଳିଯୁଗକୁ, ଅଛନ୍ତି ସେ ନର
ଦେହକୁ ବହ୍ନ ।

ବଇଷ୍ଣବ ବେଶ, ମଞ୍ଚରେ ପ୍ରକାଶ, ଦୀକ୍ଷା ଅବଧୂତହିଁ ।
ବକଳ ଭୂଷଣ, ଦେଖ ସର୍ବଜନ, ଜ୍ଞାନ ଭଣ୍ଡାରକୁ
ଅଛନ୍ତି ଧୋଇ । ୨ ।

ବଚନେ ହୁଙ୍କାର, କହିବେ ନିପ୍ପର । ମନ୍ତ୍ରମୂର୍ତ୍ତି ନ ଦେଇ ।
ଅକ୍ଷୟ ଶରୀର, ଅଟେ ତାହାଙ୍କର, ନ ଥାଇ ଯାହାର
ସ୍ୱରୂପ ଛୁଇ । ୩ ।

ମହାଶୂନ୍ୟଠାରୁ ପ୍ରଭୁ ଶ୍ରୀମୁଖରୁ ଝର ଆସୁଛି ମହୀ ।
ଦେବାଦେବୀଗଣ, ମୃତ୍ତିକା ପାଷାଣ
ବ୍ରହ୍ମାଣ୍ଡେ କେହ୍ନ ନ ପାରିବେ ର. । ୪ ।

ବ୍ରହ୍ମାଣ୍ଡରେ ନ ରହିବେ ଟି କେହ୍ନ ।
ଆତ୍ମଜ୍ଞାନ ଭାବ ସର୍ବଠାରେ ହେବ ସାର କର୍ମ ବୋଲଇ ।
ଦେଖିବ ମହିମା ପ୍ରଭୁ ଗୁଣ ସୀମା
ସ୍ୱାମୀ ଯେମାନଙ୍କୁ ଥିବେଟି ଧୋଇ । ୫ ।

ଯାହାଙ୍କୁ ଅଲେଖ ବୋଲୁଛନ୍ତି ଲୋକ ମୋ ଜୀବର ଗୋସାଇଁ ।
ନିଷ୍ଟୟ ଡାକିବେ, କଷଣ ଫେଡିବେ ।
ଭଣେ ଭୀମ ଭୋଇ ଅଧମ ବାଇ । ୬ ।

---

୦୧-୫—ଅବଧୂତ ବେଶ ।

( ୪୧ )

(୧) ଯାଉଁ ଶରଣ ମାଗ । ଗୁରୁ ପାଦବନ୍ଦେ ହୋଇଲେ ଯୋଗ୍ୟ । ଘୋଷା ।
ଏକା ଜଣକର ନୁହନ୍ତି ଠାକୁର ଅଛୁ ସବୃତ ଭାଗ ।
କୋଟି ଲୋକ ହେବ    ଉଦ୍ଧାର ନୋହିବ ।
ଯେଉଁମାନେ ଭଜୁଥିବେଟି ଆଗ । ୧ ।

ଦସ୍ଥା ଯେବେ ହେବ । ଏ ପିଣ୍ଡ ରହିବ । ଗୃଣ ଯୁଗରେ ଥିବ ।
ଯାର ମନେ ଇଚ୍ଛା    ଅଛି ଯେଉଁ ବାଞ୍ଛା ।
ନଷ୍ଟେ ପରାପତ ତାହାଙ୍କୁ ହେବ । ୨ ।

ମହାଘୋର କଥା କହିବେ କହିତା କହିଲେ ତା ଅସମ୍ଭବ ।
ଦିନୁଁ ଦିନୁଁ ଦେଖି    ହେବ ନେଇ ଲୋକ୍ୟ ।
ମାଣ୍ଡିଟିବେ ଭକ୍ତେ ଏ ଚଉଦିଗ । ୩ ।

ଅପୁର୍ବ କାହାଣୀ ହେବ ଏ ମେଦିନୀ ନେନ୍ନ ନେତ୍ରାଲେ ଦେଖିବ ।
ଅଲେଖ ମହିମା    ଯେବେ ନ ଭଜିବ ।
ରବ ତଳେ ନାହିଁ ମିଳିବ ଠାବ । ୪ ।

ଦେଉଅଛୁ ଡାକ ଠାକୁର ଯାକ ଏତାରେ ଯେ ଧରିବ ।
ସାଧିଲେ ସୁଜ୍ଞାନ    ରହିବ ବନ୍ଧନ ।
ବ୍ରହ୍ମଅଙ୍ଗ ଲୋକ ସେ ବୋଲାଇବ । ୫ ।

କଳି କ୍ଷୟ ଯିବ । ଧର୍ମ ପ୍ରକାଶିବ । ହେଲାଣି ସତ୍ୟ ଶୁଭ ।
ଗୁରୁପାଦ ଧ୍ୟାଇ    ଭଣେ ଶ୍ରୀମ ଖେଉ
କବିକୃତ ପଦ ଯୋଗ୍ୟ ହୋଇବ । ୬ ।

( ୪୬ )

(୬) କ୍ଷପି ଯାଉଛି ପୃଥୀ ଡାକ ମନ୍ତ୍ରମାଙ୍କୁ ରକ୍ଷ ଧରତ । ଘୋଷା ।
ସାଧୁ ସୁଜ୍ଞଜନ ଘେନ ମୋ ବଚନ କରୁଅଛୁ ବିନତ ।
ଯେତେ ଦନଠାରୁ ଉଦେ ହେଲେ ଗୁରୁ ।
ରବିତଳେ ଅଛ କେ କେ ଭଗତ । ୧ ।
ସଂସାର ପୋଡ଼ୁଛୁ ଆକାଶେ ଉଡ଼ୁଛୁ ଯେପରେ ଅଗ୍ନି ଜ୍ୱାଳା ।
ଜଳବୁନ୍ଦେ ହୁଅ ଦେବାକୁ କେ ଅଛୁ
ଜନ୍ମର ମଧ୍ୟେ ହୋଇ ଶକତ । ୨ ।
ଯେବଣ ଭକତ ରଖିବେ ଜଗତ ଜ ଅବା ଯଥ ମତା ।
ଜନପୁର ମଧ୍ୟ ସମର୍ପିବେ ନେଇ
ଶିରେ ଉଠାଇବେ ଗ୍ରମର ଛତ । ୩ ।
ବେକୁଁ ବେଳ ମହା ଉତ୍ପାତ ହୋଇ ପାପ ହେଲାଣି ପୃଥୀ ।
ମଦ ମାଂସ ଖାଇ ମହାସୁଖ ପାଇ ।
ନ ଜାଣିଲେ କେହୁ ଦବର ଗତ । ୪ ।
ଧର୍ମକୁ ସ୍ଥାପନ କର ସବଜନ ସତ୍ୟଯୁଗେ ଯେ ସ୍ୱିତ ।
ଏ ପିଣ୍ଡ ବ୍ରହ୍ମାଣ୍ଡ ଯେ କଲେ ନିର୍ମାଣ ।
ସେ ଏକା ରଖିବେ ଏ ନବ କ୍ଷିତ । ୫ ।
ବ୍ରହ୍ମାଣ୍ଡ ରହିଲେ ପ୍ରଭୁଙ୍କୁ କହିଲେ ମିଳିବ ଦସା ସ୍ଥିତ ।
ପାସୋରିବ ଦୁଃଖ ଲଭିବଇଁ ସୁଖ ।
ଭଣେ ଭୀମ ହୀନ ପାମର ମତ । ୬ ।

---

୪୬—୧୫—କଲେ ନିର୍ମାଣ

( ୪୪ )

(୪) କର ସତ୍ୟ ଆଦର । ଛେଦ ହୋଇଯିବ ପାତକ ଭାର । ଘୋଷା ।

ଦୁର୍ଲ୍ଲଭ ଜନମ ଦେଲେ ନାରାୟଣ ହେଉଛ ନାରଖାର ।
ମାୟା ମୋହେ ପଡ଼ି କିୟା କର୍ମେ ଜଡ଼ି
ହୋଇଲେଣି ସବେ ଦୁଷ୍ଟ ଅସୁର । ୧ ।

ପାପମାନ କର ଦୋକାନେ ଦୋସର । ବୋଝ ବନ୍ଧିଲେ ଶିର ।
କର୍ଣ୍ଣରନ୍ଧ୍ରେ ବୁଝିଲେ ପ୍ରଭୁଙ୍କୁ ଭଜିଲେ ।
ଦୋଷ ଅପରାଧ ହୋଇବ ଦୂର । ୨ ।

କିଛି ଦୋଷ ନାହିଁ କହୁଛି ବୁଝାଇ ବଚନ ସୁଧା ଧାର ।
ଆଜ୍ଞା ନ ଘେନଲେ ବୋଲ ନ ମାନଲେ ।
ପଶ୍ଚାତେ ହୋଇବ ପୋଡ଼ା ଅଙ୍ଗାର । ୩ ।

ଅଲେଖ ପ୍ରଭୁଙ୍କୁ ଭଜ ହେ ତାହାଙ୍କୁ କଷ୍ଟେ ହେବ ଉଦ୍ଧାର ।
ସବ ଅଭ୍ୟାଗତ ସେବଣ ଅତିଥ ।
ସେବା ଭକ୍ତି କର ତାଙ୍କ ପୟର । ୪ ।

ସେହୁ ଅବଧୂତ ମହିମା ବଖ୍ୟାତ ଗ୍ରହିଛନ୍ତି ସଂସାର ।
ମନୁଷ୍ୟ ପରାୟେ କର ଏବେ ନ୍ୟାୟେ ।
ଶ୍ରୀଗୁରୁ ଶ୍ରୀମୁଖେ ବଥ ଇଶ୍ୱାର । ୫ ।

ସତ୍ୟ ତ୍ରେତୟା ଦ୍ୱାପର । କଳିଯୁଗେ ସେଉଁ ଧର୍ମଟି ସାର ।
ଗ୍ରନ୍ଥ ଦେଇଅଛି ମାୟାରେ ପଡ଼ିଛି ।
ଭଣେ ଭୀମଭୋଇ କରତେ ଧର । ୬ ।

୪୪-୧୬—ସେବଣ ଭଗତ, ୪୪—୧୬—କର ଓଜର ।

( ୪୫ )

(୧) ଅଣାକାର ଅରୂପ ବ୍ରହ୍ମ ମରତ ହେ ।
ଏବେ ବଳସ୍ତେ କହେନ୍ତ ଧରତ ହେ । ଘୋଷା ।

ଅରୂପ ପୁରୁଷ ରୂପବନ୍ତ ହୋଇଲେ । ବ୍ରହ୍ମାଣ୍ଡକୁ ଅଇଲେ ।
ଭଗତ ହିତକାରୀ । କରୁଣା କୃପାଧାରୀ
ମାୟାସିନ୍ଧୁ ମାନଙ୍କୁ ନେବେ ଉଦ୍ଧାର କରି ।
ପିଣ୍ଡ ପ୍ରାଣକୁ ଦେଇ କର ଭଗତ ହେ । ୧ ।

ଅନାମିକା ପୁରୁଷ ସେ ନାମକୁ ବନ୍ଧୁ । ରକ୍ଷା କମନ୍ତ୍ର ମନ୍ତ୍ରୀ ।
କବେଦରୁ ପ୍ରକାଶ । ମହିମା ଧର୍ମ ରସ ।
ଭଜି ଯେବେ ପାଇବ ଯିବ ପୂର୍ବ କଲ୍ମଷ ।
ତେବେ ପାଇବ ସଦଗତ ମୁକତି ହେ । ୨ ।

ଅଚକ୍ଷୁ ପୁରୁଷ ସେ ଯେ ଚକ୍ଷୁଟ ହେଲେ ।
ଅପେ ଅଟଥ ହେଲେ ।
ଅଲେଖ ପଦ ଯେହୁ । ଲେଖି ନୁହଇ ଯେହୁ ।
ଗୁରୁପଣେ ଶକତା ଅଟନ୍ତ୍ର ମହାବାହୁ ।
ଏକୋଇଶ ଭୁବନେ ସେହୁ ନୃପତ ହେ । ୩ ।

ଅକଳ୍ପଣା ପୁରୁଷ ସେ କଳ୍ପଣା କଲେ ।
ଅଙ୍ଗ ସର୍ବେ ଜନ୍ମିଲେ ।
ଏବେ ସେ କରତାଙ୍କୁ । ନେତ୍ରରେ ଦେଖି ଦେଖି ।
କହିତ କରୁଅଛ ଭଜୁଅଛ କାହାକୁ ।
ଏବେ ବୈଷ୍ଣବ ଧର୍ମେ ଅଛୁ ଏ ପୃଥ୍ୱୀ ହେ । ୪ ।

ଅଦ୍ୱୟେ ପୁରୁଷ, ଅଦ୍ୱୟେ ହେବାକୁ ନାହିଁ । ଏକୁ ନାହିଁ ନା ଦୁଇ ।
ବ୍ରହ୍ମାଣ୍ଡେ ଗୁରୁ ବୋଲେ ଶିଷ୍ୟ ନାହାନ୍ତି କେହି ।
ବଢ଼ିମା ପଣେ ସର୍ବେ ହନ ଯାଆନ୍ତି ବନ୍ଧ ।
ଗୁରୁ ଦର୍ଶନେ ଖଣ୍ଡେ ଜାଳ ଛପନ୍ତି । ୫ ।
ଦେହଧାରୀ ହୋଇଛନ୍ତି ମର୍ତ୍ତ୍ୟମଣ୍ଡଳେ ।
ଏ ଘୋର କଳିକାଳେ ।
ଅବନା ଅଣାକ୍ଷର । ବାନାହିଁ ନୀରବର । ବଚନ ସୁଧାଧାର
ମୁକ୍ତିଦାମୀ ପସର
ଭଣେ ଖ୍ରୀମ ଅର୍ଷିତ କର ନେତ୍ର ହେ । ୬ ।

( ୪୭ )

(୨) ତେଜ ଭଜ ପାଶଲେ ହେବ ଅମର ହେ ।
ତେବେ ଲୀନ ହୋଇବ ବ୍ରହ୍ମ ଅଙ୍ଗର ହେ । ଘୋଷା ।
ପୂର୍ଣ୍ଣାନନ୍ଦ ପୂର୍ଣ୍ଣବ୍ରହ୍ମ ଅଟନ୍ତି ସେହି । ଚିହ୍ନ ତାହାଙ୍କୁ ଧ୍ୟାଇ ।
ନୋହେ ଅଲ୍ପ ବହୁତ କିଛୁ ନୂତନ ଗୁଣା ।
ତେଜ ବିରାଜେ ଅଛି ନୁହେ ନୂଆ ପୁରୁଣା ।
ପାରି ହେବ ଯେମନ୍ତେ ବସ ନାବର ହେ । ୧ ।

ସଦାନନ୍ଦ ସଦା ସର୍ବଦାରେ ଅଛନ୍ତି । ଛଏ ବୃତ୍ତି ନୁହନ୍ତି ।
ସେହି ବ୍ରହ୍ମେ ଭଜତ । ଭର ଦାନସ ଗତ ।
ଧର ଅଣବ୍ରକାର ନାହିଁ ନାତ ଅନାନ୍ତ ।
ଭବସାଗରୁ ହେବେ ହେବ ଉଦ୍ଧାର ହେ । ୨ ।

---

୪୫-୨୭—ଅବନା ଅଣାକ୍ଷର—ଚାଠାନ୍ତର

ଶାନନ୍ଦ ଜଗତରେ ଜାଣନ୍ତି ସବୁ । ଅନ୍ତର୍ଯାମୀ ସେ ପ୍ରଭୁ ।
କଲେ ନିଷ୍କାମ ଚିତ୍ତ । ଗମିବ ସେହି ପଥ ।
ହେଲେ ଭୃତ୍ୟର ଭୃତ୍ୟ । ଲଭିବ ଜ୍ଞାନ ତତ୍ତ୍ୱ ।
ନିର୍ବେଦ କର୍ମରେ କର ବିହାର । ୩ ।

ଚିଦାନନ୍ଦ ଚିରକାଳ ଅଛନ୍ତି ରହି । ଟଳି ନାହାନ୍ତି ଦେହି ।
କର ସୁସାଧୁସଙ୍ଗ । ଧର ଭଗତି ମାର୍ଗ । ଜାଗିଲେ ଆତ୍ମାଲିଙ୍ଗ ।
ଟଳି ନ ଯିବ ଅଙ୍ଗ ।
ଏର ଏକରୂପ ଚରଣାରବିନ୍ଦର ହେ । ୪ ।

ସଚ୍ଚିଦାନନ୍ଦଙ୍କୁ ଘଟେ ଚେତାଇ ରଖ । ବୁଦ୍ଧି ବିବେକେ ଦେଖ ।
ପୋଡ଼ିଯିବ କଳଙ୍କ, ରହିବ ସୁବାରୂପ ।
ବୟସ ନ ଟଳିବ, ଆୟୁ ବଢ଼ିବ ଦେଖ ।
ଆନନ୍ଦତେ ବ୍ରହ୍ମସାଗରେ ବିହର ହେ । ୫ ।

ଅରୂପାନନ୍ଦ ଅବଧୂତଙ୍କୁ ଧ୍ୟାନ । କର ସୁଜ୍ଞାନୀ ଜନ ।
ଜନ୍ମ ଲଭିଛ ମର୍ତ୍ତ୍ୟେ । ଗତି ପାଇବ ନିଶ୍ଚେ ।
ସେବା ଦେଖିଲେ ଆଗ ଦୟା କରିବେ ପଛେ ।
ଭଣେ ଶ୍ରୀମ ଅକିଞ୍ଚନ ଗୁରୁ ପଦ୍ମର ହେ । ୬ ।

( ୪୭ )

(୩) ବ୍ରହ୍ମ ବିଜେ ବତିଶ ବେଢ଼ା ଭିତରେ ହେ ।
ଗମି ପାରିଲେ ନିର୍ବେଦ ମନ୍ଦିରେ ହେ । ଘୋଷା ।
ମହାଶୂନ୍ୟ ପୂର୍ଣ୍ଣ ବ୍ରହ୍ମ ଅଛନ୍ତି ସେହି । ରୂପ ରେଖନ୍ତି ନାହିଁ ।
ମିଛକୁ ଛାଡ଼ି ସତ୍ୟ । ରଖି ପାରିଲେ ନିତ୍ୟ ।
ହେବେ ଅସ୍ତ ଦର୍ଶନ ପାଳିଲେ ଦୃଢ଼ବ୍ରତ ।
ନିଶ୍ଚେ ଦେଖିବ ଯାଇ ଜ୍ଞାନନେତ୍ରରେ ହେ । ୧ ।

ଅଣାକାର ପୁରୁଷ ସେ ଆକାର ନାହିଁ । ଖୋଜ ପାଶଲେ ପାଇ ।
ବ୍ରହ୍ମ କର୍ମରେ ଅଙ୍ଗ ପରିପୂର୍ଣ୍ଣ ହୋଇଲେ ।
ଅସାଧନା ମାର୍ଗରେ ନିଜକର୍ମ ଧରିଲେ ।
ତେବେ ଖୋଲି ପାରିବ ସେହି ପଥରେ ହେ । ୨ ।

ଅବ୍ୟକତ ପୁରୁଷ ସେ ବ୍ୟକତ ନାହିଁ । ଚିହ୍ନ ତାହାଙ୍କୁ ଧାଇ ।
ଦୁର୍ଲ୍ଲଭ ଜନ୍ମପିଣ୍ଡ ଥିବ କେତେ ଦିବସ ।
ଅଲେଖ ଗୁଞ୍ଜି ଚଢ଼େ ଖୋଜ ଭକ୍ତିରେ ରସ ।
ଅନୁମାନରେ ଧର ଘଟସୂନ୍ୟରେ ହେ । ୩ ।

ସେ ଅଲେଖ ଅବଧୂତ ଜଗତ ତାତ । ସର୍ବ ଜୀବଙ୍କ ହିତ ।
କାମନା କଳ୍ପନାକୁ ଆୟତ୍ତ କରି ରଖ ।
ଆପ ଆତ୍ମାକୁ ଘଟେ ବୁଝି ବିବେକ ଦେଖ ।
ନିଶ୍ଚେ ପ୍ରକାଶ ହେବ ବ୍ରହ୍ମ ଅଙ୍ଗରେ ହେ । ୪ ।

ଅଶେଷ ବ୍ରହ୍ମାଣ୍ଡର ଅନନ୍ତ ଠାକୁର । ସମସ୍ତଙ୍କ ଉପର ।
ଆପଣା ପିଣ୍ଡ ପ୍ରାଣ ଯେ ଅଛି ଦାରା ଧନ ।
ପୁତ୍ର ଦୁହିତା ନେଇ । ଶ୍ରୀମୁଖରେ ଦିଅ ଦାନ ।
ସବୁ ସମର୍ପି ଦିଅ ଗୁରୁ ପଦ୍ମରେ ହେ । ୫ ।

ଅଲେଖ ପୁରୁଷ ନାମ ଲେଖି ନୁହଇ । କେହୁ ପାରିବ କହି ।
ଭଣେ ଭୀମ ଅକ୍ଷର । ଶୂନ୍ୟ ବ୍ରହ୍ମରେ ଚିତ୍ତ ।
ନାହିଁ ମୋର ଶକତ ହୋଇବାକୁ ଭକତ ।
ଅନୁସରି ରହିଛି ଗୁରୁ ଦୁଆରେ ହେ । ୬ ।

( ୪୮ )

(୪ ଶୂନ୍ୟେ ଶୂନ୍ୟେ ଆସିବା ଚିହ୍ନା ହେଉଛି ହେ ।
ମାୟାଗୁମ୍ଫାରେ କାହିଁ ନହିଁ ଲାଗୁଛି ହେ । ଘୋଷା ।

ମେଦନୀରେ ଗୃଲୁଛନ୍ତି ନ ଲଗେ ଧଳା ।
ଅଙ୍ଗ ଟିମ ନ ଟଳା ।
ନୂହନ୍ତି ପଥଶ୍ରମ, ନାହିଁ ପାଦେ ପଦ୍ମ ।
ଅଚ୍ୟାନ୍ତି ସୁକୁମାର ଅଟନ୍ତି ସେ ପୁରୁଷ ।
ମନେ ପଡ଼ିଲେ ନେଇଁ ନିର ବହୁଛି ହେ । ୧ ।
ଭୋଜନ ମାଗୁଅଛନ୍ତି କ୍ଷୁଧା ନ ଥାଇ ।
ଜଳେ ତୃଷାର୍ତ୍ତୀ ନୋହି ।
ଛପନା କୋଟି ଜୀବ ଯାହାର କୁଟୁମ୍ବାଦ ।
ବାଉନ କୋଟି ଭଣ୍ଡାର ରଖିଛନ୍ତି ହମାଦ ।
ଏହା ଭେଦନ୍ତ କର କେହୁ ଜାଣୁଛି ହେ । ୨ ।
ଛନଣ ଛାଠିଏ ଦ୍ୱାନ କର ଭ୍ରମଣି ।
ଗ୍ରାମେ ଦ୍ୱନେ ଦେଣି ।
ସେ ପ୍ରଭୁ ମହିମାହିଁ ଦୁଃଖ କଷଣ ସହି ।
ଜଗତ୍ ଭକ୍ତ ନିମନ୍ତେ ଏତେ ଅନଷ୍ଟା ହୋଇ ।
ଶୁଣ ଶୁଣି ହୃଦୟ ପୋଡ଼ି ଯାଉଛି ହେ । ୩ ।
ବ୍ରହ୍ମାଣ୍ଡକୁ କରିଛନ୍ତି ଘର ବଖରା ।
ଆଦ ଏ ଛନପୁଖା ।
ସପତ ସିନ୍ଧୁ ଘାଟେ ଜଳେ ସ୍ନାହାନ କରି ।
ଚନ୍ଦ୍ର ସୂର୍ଯ୍ୟ ଯାହାର ଦୀପାବଳୀ ପହରୀ ।
ଠୁଲ ଶୂନ୍ୟ ମୁଦ ଗୁହଣି ହୋଇଛି ହେ । ୪ ।
ସ୍ୱର୍ଗ ଦ୍ୱାରେ ସ୍ୱର ମେରୁ ହୋଇଛି ଖମ୍ବ ।
ସେ ସ୍ୱର ଗୋଟି ରୋମ ।

---

୪୮—୮—ତୃଷାର୍ତ୍ତୀ ହୋଇ ୪୮—୧୫—ଭକ୍ତ ଯହୁ !
୪୯—୧୯—ସ୍ନାହାନ ସାର

ପୃଥୀଦେବୀ ଯାହାର ପୟର ମଶ୍ଚାଳନ୍ତି ।
ଛପନ କୋଟି ଜୀବ ଯା'ଧ୍ୟାନ ପୂଜନ୍ତି ।
ସେହି ପୁରୁଷ ଅବତାର ହୋଇଛନ୍ତି ହେ । ୫ ।
ବନ୍ଧୁ ସେ ବ୍ରାହ୍ମଣ ଦାନ ପାଉନ୍ତି ଯେଣୁ ।
ସର୍ବେ ଥାଅ ହେ ଶୁଣି ।
ଜବ ପନ୍ଦର ମୋତେ ଶିରେ ବୁହାଇ ଦେଲେ ।
ଅତିଥିରୂପେ ସ୍ୱାମୀ ବ୍ରହ୍ମାଣ୍ଡରେ ବୁଲିଲେ ।
ଭଣେ ଶ୍ୟାମ ଅକ୍ଷିତ ନୁହେଁ ମୂରୁଛି ହେ । ୬ ।

( ୪୯ )

(୧) କେତେ ଦେଖିଛ କି ବେନି ନୟନରେ ।
ବୃଦ୍ଧ ବୟସରେ ଅତିଥି ବେଶରେ
ଗୁରୁ ଯାଉଥିଲେ ଏହି ପଥରେ । ଘୋଷା ।
ପିତା ମାତା ନାହିଁ ଜନ୍ମ ହୋଇଲେ ।
ଥନ ନ ଚୁମ୍ବିଣ କ୍ଷୀର ଖାଇଲେ ।
ବାବୁଧନ ବୋଲି ଗେଲ କରିଥିଲି ।
ବସିଥିଲେ ମୋର କୋଳରେ । ୧ ।
ବଢି ନାହାନ୍ତି ସେ ସାନ ପିଲନ୍ତି ।
ବୃଦ୍ଧ ହୋଇଅଛି ଯୁବା ତେଜନ୍ତି ।
ଗୋରା ନ ହଅନ୍ତି କଳା ନୁହନ୍ତି ।
ସ୍ୱରୂପକ ଦୂର ମଧ୍ୟରେ । ୨ ।
ଘରୁ କେଭେଁ ନୋହିଥିଲେ ବାହାର ।
ଖଜା ଚୂଡ଼ା ଦେଇ ନାହିଁ ଆହାର ।

---

୪୯—୯—ବୃଦ୍ଧା ହୋଇ ନାହିଁ

ଶୁଙ୍ଖାଇ ରଣାଇ ନାମ ଦେଇ ନାହିଁ ।
ଧୂଳି ଖେଳୁଥିଲେ ଦାଣ୍ଡରେ । ୩ ।
ରୂପବର୍ଣ୍ଣ ନାହିଁ ଝଳ ଚନ୍ଦ୍ର ।
ପାଦ ପାଣି ନାହିଁ ଗ୍ଳୁଅଛନ୍ତି ।
ବସ୍ତ୍ର ନାହିଁ ବୃକ୍ଷ ବକଳ ପିନ୍ଧନ୍ତି ।
ଆଡ଼ବନ୍ଧ ଲାଇ କଟିରେ । ୪ ।
ମୋତେ ଧରନ୍ତ ଆକାଶ ନନ୍ଦଲେ ।
ପୁଣି ଯୋଗୀନ୍ଦ୍ର ହେଲେଣି ବୋଇଲେ ।
ବ୍ରହ୍ମାଣ୍ଡ ଉଦ୍ଧାର କରିବେ କୁମର !
ଘୋର କଳିକାଳ ଯୁଗରେ । ୫ ।
ସର୍ବ ଶୁଭେ ଯେବେ ଭେଟ ପାବନ୍ତି ।
କୋଳେ ଧରି ମୁଖେ ଚୁମ୍ବ ଦିଅନ୍ତି ।
ଭଣେ ଭୀମ ହୀନ ପାମର ଅଜ୍ଞାନ ।
ଲେଉଟିଛି ବ୍ରହ୍ମାଣ୍ଡ ଭିତରେ । ୬ ।

( ୫୦ )

(୧) ତାତ ମାତ କରୁଛନ୍ତି ରୋଦନ ।
ଚଉଦଗେ ଫେରି, ପଚ୍ଛରି ପଚ୍ଛରି ।
କାହିଁଗଲେ ଏକ ନନ୍ଦନ । ଘୋଷା ।
ପିତା ବୀନାମୃତ ତୋଳି ନ ଦେଇ ।
ମାତା ପ୍ରସବଲେ ଦୁଃଖ ନ ପାଇ ।

---

୯୯—୯୯ ଅଡ଼୍ବନ୍ଧ କାନ୍ଧ

ଗଭ୍ୟ ନ ପଢ଼ନ୍ତେ ଗଲେ କେଉଁ ପଥେ ।
ବୁଦ୍ଧି ନ ଶିଖନ୍ତେ ହେଲେ ସିଦ୍ଧାଣ । ୧ ।

ଜନ୍ମହନ୍ତୁ କ୍ଷୁଧା ତୃଷା ନ ଥାଇ ।
ଉଦର ପୂରଉ୍ଥ କଛୁ ନ ଖାଇ ।
ତୈଳ କୁଙ୍କୁମ ଅଙ୍ଗେ ନ ଲଗଇ ।
ଦେହ ଦଶେ ଯେସନେକ ସୁବର୍ଣ୍ଣ । ୨ ।

ଜଳ ନ ଥାଇ କରନ୍ତି ସ୍ନାହାନ ।
ଯୋ ନାହିଁ ପଲଙ୍କରେ ଶୟନ ।
ନିଦ୍ରା ନାହିଁ ହାଇ ଆଳସ ମାରନ୍ତି ।
ଅଚେତେ ପଢ଼ି ଶୁଣନ୍ତି ବଚନ । ୩ ।

କଣ୍ଠ ନାହିଁ ବଚନଟି କୋକିଳ ।
କର୍ଣ୍ଣ ନାହିଁ ଶୁଣୁଛନ୍ତି ସକଳ ।
ଚକ୍ଷୁ ନାହିଁ ସବ ସମାନ ଦେଖନ୍ତି ।
ଦାସ୍ତ୍ୟା ନ ଥାଇ କରନ୍ତି ତାରଣ । ୪ ।

ମୁଖ ନାହିଁ ଖଲ ଖଲ ହସନ୍ତି ।
ଦନ୍ତ ନାହିଁ ଲୁହାଚଣା ଚୋବାନ୍ତି ।
ଜିହ୍ୱା ଅଗ୍ର ନାହିଁ ସୁଆଦ ବାରନ୍ତି ।
ନିମ୍ବ ମଧୁର ମଣନ୍ତି ସମାନ । ୫ ।

ଅନୁମାନ କରୁଛନ୍ତି ସଂସାରେ ।
ବୁଦ୍ଧି ନାହିଁ ଅବିବେକ ବିସ୍ତାରେ ।
ଭଣେ ଭୀମଭୋଇ, କାହିଁ କାହିଁ ହୋଇ ।
ନ ବୁଝନ୍ତି ଏ ପୂହର ଚଦନ । ୬

( ୫୧ )

(୩) କାହିଁ ବୈକୁଣ୍ଠେ ମୋ ଇଷ୍ଟ ମାଧବ । ଛନ୍ତି କେତେଦୂର ।
କେଉଁଠାରେ ଘର ଦେଖିଅଛ ଯେବେ କହିବ । ଘୋଷା ।

ସ୍ନେହ ନାହିଁ ଛନ୍ତି ପ୍ରୀତି ଲଗାଇ ।
ଦେଖାଦେଖି ନାହିଁ ମୂର୍ତ୍ତି ଲୁହଇ ।
ପ୍ରତିଦିନ କଥା ବାରତା ଲଗିଛି ।
କେତେ ଦିନେ ଭେଟ ପଡ଼ିବ । ୧ ।

ବସ୍ତି ଦେଇଛନ୍ତି ସ୍ଥାନ ନ ଥାଇ ।
ଘର ଦେଲେ କ୍ଷଣ କୁଟା ନ ଗ୍ଲଇ ।
ଦ୍ୱାର ଦେଇଛନ୍ତି ନାହିଁ ମାର୍ଗ ପ୍ରତି ।
କେଉଁ ରୂପେ ଯାଇ ଆସିବ । ୨ ।

ଅକର୍ମଦାୟକ ପଣ୍ଡ ବୋଲନ୍ତି ।
କର୍ମେ ନାହିଁ ଥିଲେ ଯାଚି ଦିଅନ୍ତି ।
ଦଣ୍ଡେ ଅଟନ୍ତି ଦାତା'ପଟେଣ ଦେ'ନ୍ତି ।
ସେବା ନ କରନ୍ତେ ଫଳ ମିଳିବ । ୩ ।

ସବୁଗୃହରେ କୁଣିଆ ହୁଅନ୍ତି ।
ବନ୍ଧୁ ବୋଲି କେହି ନାହିଁ ଚିହ୍ନନ୍ତି ।
ପାଣରେ ନ ଥାଇ କଷଣ ଫେଡନ୍ତି ।
ତାଙ୍କ ଗୁଣମାନ କେହ୍ନେ ଶୁଝିବ । ୪ ।

ବାନା ଭକ୍ତପୁର ମଧ୍ୟେ ଉଡ଼ୁଛି ।
ଧର୍ମ ନାହିଁ ପୁଣ୍ୟେ ପୃଥୀ ପୂରୁଛି ।
ଯଶ ନାହିଁ କୀର୍ତ୍ତି ପ୍ରକାଶ ହୋଇଛି ।
ଗୁଣ ଯୁଗଳ୍ପ ସେ ରହିବ । ୫

ଫୁଟି ନ କାନ୍ଦ କରନ୍ତ ରୋଦନ ।

ଅଗ୍ନି ନାହିଁ ପୋଡ଼ୁଅଛୁ ଜୀବନ ।

ସ୍ୱାମ ଅରକ୍ଷିତ, ଗୁରୁ ପାଦଗତ ।

ଜଣାଇଲେ ଦୁଃଖ ଫିଟିବ । ୭ ।

( ୫୨ )

(୯) ଭେଟ ପାଇଲେ କରନ୍ତ ବନ୍ଦନ । କରପଦ ଯୋଡ଼ି ।
ପାଦତଳେ ପଡ଼ି । ଦୁଃଖ ସୁଖ ମୋର ଜଣାନ୍ତ । ଘୋଷା ।

ହସ୍ତ ନ ଲଗାଇ ପିଣ୍ଡ ଗଢ଼ନ୍ତ ।

ଜୀବ ପରମ ଏ ଅଙ୍ଗେ ଅଛନ୍ତ ।

ଭିନ୍ନ ଭିନ୍ନ କରି ଥୋଇଛନ୍ତ ବାରି ।

ଏକଠାରେ ଯୁବା ଯୁବତୀ । ୧ ।

ଝିଅ ନ ନେଇ ଜ୍ୱାଇଁ ବୋଲନ୍ତ ।

ଯୋଗ ନାହିଁ ବନ୍ଦାପନା ହୁଅନ୍ତ ।

ଏକା ଘରେ ଥାଇ ଛୁଆଁ ଛୁଇ ନାହିଁ ।

କରୁଛନ୍ତ ସୁଖ ସୁରତ । ୨ ।

ପାଶେ ଥାଇ ଦୂରାନ୍ତରେ ନବାର ।

ଛପ୍ପନ କୋଟି ବ୍ରହ୍ମଙ୍କୁ ଆବୋର ।

ଭଣ୍ଡାର ନ ଥାଇ ପଡ଼ି ବାଣ୍ଟୁଛନ୍ତ ।

ପ୍ରତିପାଳ କରୁଅଛନ୍ତ । ୩ ।

ସେବାଭକ୍ତ ନାହିଁ ସେବା କରନ୍ତ ।

ପାଦତଳେ ତନପୁର ଖଟନ୍ତ ।

ଯାଚ ନ ଦଅନ୍ତି ଫଳ ପାଉଛନ୍ତି ।

ସ୍ୱର୍ଗକୁ ନ ଯାଇ ତରୁଅଛନ୍ତି । ୪ ।

ନାମ ନାହିଁ ଅନାମିକା ପୁରୁଷ ।

ରୂପେ ଥାଇ ଅରୂପରେ ପୁରୁଣ ।

ନ ଭଜଲେ ଆପେ ପ୍ରସନ୍ନ ହୁଅନ୍ତି ।

ନାହିଁ ଦେଖି ବ୍ରହ୍ମେ ଲୀନ ହୁଅନ୍ତି । ୫ ।

ଡଙ୍କା ନ ବାଜନ୍ତେ ନବଖଣ୍ଡରେ ।

ଶବ୍ଦ ଶୁଭିଲଣି ଉନ୍ନପୁରରେ ।

ଭଣେ ଭୀମ ଭୋଇ ଅରୂପକୁ ଧାଇ ।

ଗୁରୁଚରଣରେ ରହୁ ମୋ ମତି । ୬ ।

( ୫୩ )

(୧) ଉଠ ଶୂନ୍ୟ ଶିଖରେ, ଭେଟ ଅଲେଖପୁରେ

ଖଟସେବା ଭଗତ ମୁକତ ହେ । ଘୋଷା ।

ବିନ୍ଦୁ ଫୁଟଇ କାନ୍ତି । ଜାଜ୍ୱଲ୍ୟମୟ ଜ୍ୟୋତି

ଆବାଲ୍ୟରୂପ ବ୍ରହ୍ମ ମୂରତି ହେ । ୧ ।

ସଦାକାଳେ ଅତିଥି । ନାହିଁ ଦବସବତି ।

ଅମ୍ବରେ କାହିଁ ନାହିଁ ବହନ୍ତି ହେ । ୨ ।

ସର୍ବଠାବରେ ଛନ୍ତି । କାହିଁରେ ନ ମିଶନ୍ତି ।

ଚିତ୍ତ ଲଗାଇ କର ପୀରତି ହେ । ୩ ।

ରଜ ବୀଜ ନୁହନ୍ତି । ପବନେ ନ ଉଡ଼ନ୍ତି ।

ନାହିଁ ବନ୍ଧ ପ୍ରକଟ ବକୃତ ହେ । ୪ ।

ଦ୍ୱାଦଶ ଯୁଗ ଛିଡ଼ । ତହୁଁର ଯାଏ ପ୍ରତ ।
ସ୍ମୃତ ଯୁଗରେ ବ୍ରହ୍ମ ଖେଳନ୍ତ ହେ । ୫ ।
ଭଣିଲେ ଖ୍ରୀମ ଛିଡ଼ । ଗୁରୁ ପଦ୍ମରେ ମତ ।
ଅଭେଦ ମାର୍ଗେ ବ୍ରହ୍ମ ଦଶନ୍ତି ହେ । ୬ ।

( ୫୪ )

(୨) କର ବଢ଼ାଇ ଧର । ହେଉଛୁ ତରତର ।
ଲୁଚ ପଶୁଛୁ ଯାଇ ଭିତରେ ହେ । ଘୋଷା ।
ଶବଦବ୍ରହ୍ମ କାନ୍ତ ହୋଇଛୁ ସେ ମନ୍ଦରେ ।
ମେରୁ ପୋଛୁଛୁ ଚନ୍ଦ୍ରପାଣରେ ହେ । ୧ ।
ସୂର୍ଯ୍ୟ ଦେବତା ଯାପ । ଚନ୍ଦ୍ର ଦର୍ପଣ ରୂପ ।
ପାହାର ହୋଇଛନ୍ତି ସେ ପୁରେ ହେ । ୨ ।
ଏ ତନ ବ୍ରହ୍ମାଣ୍ଡର । କହୁଛନ୍ତି ଖବର ।
ଯେତେ ଭଳ ଅପାର ଗ୍ରମୁରେ ଯେ । ୩ ।
ଭେଦ ତତ୍ତ୍ୱ ସେ ଘରେ । ଜଟିଛନ୍ତି ଭଣ୍ଡାରେ ।
ଜ୍ଞାନ ବର୍ଣ୍ଣା ହେଉଛୁ ବେଦର ହେ । ୪ ।
ଭାଗ୍ୟ ଅଛୁ ଯାହାରେ । ଧର ଏବେବେଳରେ ।
ଅନୁମାନ ବବେକ ବୁଦ୍ଧିରେ ହେ । ୫ ।
ଭଣିଲେ ଖ୍ରୀମ କନ୍ଧ ସ୍ୱାମୀ ଚରଣ ବନ୍ଦ ।
ଠାବ କଲଛୁ ବ୍ରହ୍ମ ଶୂନ୍ୟରେ ହେ । ୬ ।

---

୫୩— ୧୪—ଭେଦମାର୍ଗରେ
୫୪—୧୪—କଟିଛନ୍ତି ଶୂନ୍ୟବ୍ରହ୍ମରେ

( ୫୫ )

(୩) ସଙ୍କ୍ରୋଧ ତେଜ ତୋର । ନାହିଁ ଦେଉଛୁ ଧର ।
ଅଜ୍ୟୋତି ବ୍ରହ୍ମ ତହିଁ ଖେଳୁଛୁ ହେ । ଘୋଷା ।
ରୂପ ପ୍ରାପ୍ତେ ଦଶନ୍ତି । ଅରୂପେ ବିହରନ୍ତି ।
ଅଦୃଷ୍ଟି ଆସ୍ଥାନରେ ରହୁଛୁ ହେ । ୧ ।
ଅବ୍ୟକ୍ତ ହୋଇଅଛୁ । ବଚନ ନ କହୁଛୁ ।
କୃପାଜଳ ଶରୀର ବହୁଛୁ ହେ । ୨ ।
ଚକ୍ଷୁ ଧଇଲେ ବାଛୁ । ହସ୍ତୁଁ ଖସି ଯାଉଛୁ ।
ଅଛ ଚକ୍ଷଣ ଅଙ୍ଗ ହୋଇଛୁ ହେ । ୩ ।
ନିଷ୍କାମରେ ଗଢ଼ୁଛୁ । ବଡ଼ ଚତୁରେ ଅଛୁ ।
ଜଣ୍ଟିନେ ଅଚଳ୍ୟାରେ ରହୁଛୁ ହେ । ୪ ।
ନର୍ତ୍ତରୁ ଝର ଝର । ଝର ଝର ବହୁଛୁ ।
ଶରମ ପାଇ ପୁଷ୍ପ ଶୋଭୁଛୁ ହେ । ୫ ।
ଭଣିଲେ ଖୀମ ଭକ୍ତ । ମୋ ସେଉଁ ପୂର୍ଣ୍ଣାନନ୍ଦ ।
ପାଦ ବନ୍ଦରୁ ପଦ ଝରୁଛୁ ହେ । ୬ ।

( ୫୬ )

(୪) ଗମି ନାହାନ୍ତି କେହୁ । ଘୂମଗଲେ ଅନେକ ।
ଏବେ ସେ ପ୍ରଭୁ ନରସ୍ୱରୂପ ହେ । ଘୋଷା ।
ବୈଷ୍ଣବ ବେଶ ଧର । ବ୍ରହ୍ମାଣ୍ଡରେ ବିହର ।
ସପ୍ତସାଗର ନବ ଦ୍ୱୀପକ ହେ । ୧ ।

---

୫—୩— ଦଶୁଛୁ—ଦିଶୁଛୁ

ବୈକୁଣ୍ଠପୁର ବାନା ଅଟେ ଜଗନ୍ତ ଜଣା ।
ଉଡ଼ାଇଛନ୍ତି ଡନ୍ନପୁରକୁ ହେ । ୨ ।

ଋବେଦରୁ ସମ୍ଭୂତ । ମହିମା ଅବଧୂତ ।
କର୍ଣ୍ଣେ ଶୁଣିଲେ କଥା ଉତ୍ସବ ହେ । ୩ ।

ତାରବେ ସ୍କନ୍ଧଖାନ । ମହିମା ନାମ ଘେନ ।
ସୃଷ୍ଟି ପୁରୁଷ ବୃଦ୍ଧ ବାଳକ ହେ । ୪ ।

କ୍ଷମାସାଗର ବ୍ରହ୍ମ । ଧର୍ମ ନବେଦ କର୍ମ ।
ଛପନକୋଟି ଜୀବ ପାଳକ ହେ । ୫ ।

ଭଣିଲେ ଖ୍ରମ କନ୍ଧ । ସ୍ୱାମୀ ଅନାଦି କନ୍ଦ ।
ବିଜୟ କଲେ ଜଳ ଭାଳକ ହେ । ୬ ।

( ୫୭ )

(୧) ବ୍ରହ୍ମାଣ୍ଡେ ବିଜୟ ଶ୍ରୀଗୁରୁ ହେ । ଘୋଷା ।

ମିଥ୍ୟ ନୋହେ ବାକ୍ୟ । ପ୍ରତ୍ୟକ୍ଷରେ ଦେଖ ।
ପ୍ରକାଶ ଅବନା ମଧ୍ୟରୁ ହେ । ୧ ।

ନବଖଣ୍ଡେ ମସ୍ତି । ଯାଇଥାନ୍ତା ବନ୍ଧ ।
ରହିଲା ଶ୍ରୀଗୁରୁ କୃପାରୁ ହେ । ୨ ।

ଭକ୍ତ ହିତକାଙ୍କ୍ଷୀ । ଅନାଦି ସେ ନର ।
ତାରବେ ଏ ଭବସାଗରୁ ହେ । ୩ ।

ଧର୍ମାର୍ଥ ପୁରୁଷ । ଭକ୍ତସବେ ବଶ ।
ଜାଣନ୍ତି ଅନ୍ତର ଭିତରୁ ହେ । ୪ ।

---

୫୭—୯—ଜାଣିବେ ଅନ୍ତର

କରୁଛୁ ଜଣାଣ । ବିନତି ମୋ ଘେନ ।
କହିଲେ ଦୁଃଖ ମୋ ନ ସରୁ ହେ । ୫ ।
ଭଣେ ଶ୍ୟାମ ଚନ୍ଦ୍ର । ଧ୍ୟାଇ ପାଦଦ୍ୱନ୍ଦ୍ୱ ।
ହେ ପ୍ରଭୁ ଉଦ୍ଧର ସଂସାରୁ ହେ । ୬ ।

( ୫୮ )

(୨) ସଂସାର ତରିବା ନିମନ୍ତେ ହେ । ପଦ ।

ଅନାଦି ସେ ବ୍ରହ୍ମ । ଏକାକ୍ଷର ଧର୍ମ ।
ବୈଷ୍ଣବରୂପ ଏ ଜଗତେ ହେ । ୧ ।
ଢନପୁର ଯାକ । ପଢ଼ୁଅଛୁ ତାକ ।
ନ ଚିହ୍ନି ଅଜ ପରିଯନ୍ତେ ହେ । ୨ ।
ଚକ୍ଷୁ ଥାଇଁ କଣା । ବୁଦ୍ଧି ଥାଇଁ ବଣା ।
ବାତୁଳ ହେଲେଣି ସମସ୍ତେ ହେ । ୩ ।
ଯେ ହେବ ମନୁଷ୍ୟ । ଜାଣିବ ଅବଶ୍ୟ ।
ବୁଝାଇ କହୁଅଛୁ ଯେତେ ହେ । ୪ ।
ଭଜିଲେ ଏ ଦୀକ୍ଷା । ହେବୁ ରହେ ଧକା ।
ଚେତାରେ ଧର ଅନୁରାଗତେ ହେ । ୫ ।
ଭଣେ ଶ୍ୟାମ ଚନ୍ଦ୍ର ସୁଧା ମକରନ୍ଦ ।
ସୁଜନେ ପିଅ ଅନୁବ୍ରତେ ହେ । ୬ ।

( ୫୯ )

(୩) ଭଗତଙ୍କବେ ହୋନ୍ତି ବଶ ହେ । ପଦ ।

ସକାମରେ ନାହିଁ । ନିଷ୍କାମରେ ଥାଇ ।
ସତ୍ୟାଦି ବଚନେ ପ୍ରକାଶ ହେ । ୧ ।

ମନ୍ତ୍ର ପାଇଅଛ । କ ଗୁରୁ କଣଛ ।

ପୂର୍ବରୁ କର୍ଣ୍ଣଉପଦେଶ ହେ । ୨ ।

ଆସିଅଛୁ ଜୀବ । କିଛୁ ନାହିଁ ନେବ ।

ରହିବ ଯଶ ଅଯଶ ହେ । ୩ ।

ମାତୃଗର୍ଭେ ସବୁ । ଦେଇଛନ୍ତି ପ୍ରଭୁ ।

ଆପଣା ସୁଖେ ଗଲା ନାଶ ହେ । ୪ ।

ଧନ୍ୟ ନ ପାଇଲ । ମାୟାରେ ପଡ଼ିଲ ।

କାହାର କିଛୁ ନାହିଁ ଦୋଷ ।୫ ।

ଭଣେ ଭୀମଜନ । ଗୁରୁଙ୍କୁ ନ ନନ୍ଦ ।

ସେ ପାଦ ମହିମା ଅଶେଷ ହେ । ୬ ।

( ୬୦ )

(୪) ଧର୍ମରେ ଧବଳ ରହିଲ ହେ । ପଦ ।

ସକାମରେ ନାହିଁ ନିଷ୍କାମରେ ଥାଇ !

ଏବେ ସେ ପ୍ରକାଶ ହୋଇଲା ହେ । ୧

ଏକାକ୍ଷର ପଦ । ଅବନା ନବେଦ ।

କୌଣସି ଯୁଗରେ ନ ଥିଲା ହେ । ୨ ।

କଳିଯୁଗେ ଜାଣ । ଏତେ ବଡ଼ ଜ୍ଞାନ ।

ଦାଣ୍ଡ ବାଟରେ ରହିଗଲା ହେ । ୩ ।

---

୫୯—୮—ମାତୃଗର୍ଭେ ପ୍ରଭୁ ଦେଇଥିଲେ ସବୁ

୫୯—୯—ଆପଣା ସୁଖେ କଲ ନାଶ ହେ ।

୫୯—୧୦—କାହା ନାହିଁ କିଛୁ ଦୋଷ

୬୦—୨—ସ୍ୱର୍ଗଯୁଗେ ଦେଖ । ନାହିଁ ରୂପରେଖ

୬୦—୩—ବହିଗଲା ।

ବ୍ରହ୍ମ ଗଙ୍ଗାନଦୀ । କର ସ୍ନାନ ସିଦ୍ଧି ।
ସ୍ୱର୍ଗେ ମେଘନାଦ ଅଛନ୍ତି ହେ । ୪ ।
ଅପୋଡ଼ା ଭୂମିରେ । ଅଳ୍ପ ଗୃପତରେ ।
ଏବେ ସେ ଚନ୍ଦ୍ରାଟ ପଡ଼ିଲ ହେ । ୫ ।
ଭଣେ ଶ୍ୟାମ କନ୍ଧ । ଗୁରୁପାଦବନ୍ଦ ।
ମୋ ଚନ୍ଦ୍ର ନରଜେ ମଙ୍ଗଳ ହେ । ୬ ।

( ୬୧ )

( ୧ ) ଉଠ ସ୍ୱାମି ବ୍ରହ୍ମାଣ୍ଡଠାକୁର ହେ ।
ବୃନ୍ଦେ କର । ହେଉଛୁ ଉତ୍ତର । ଘୋଷା ।
ରଜନୀ ହୋଇଲା ଶେଷ । ହୁଅ ପ୍ରାତ ଅବକାଶ ।
ମୁଖ ପଖାଳ ସୁବାସ । ନଗି ହେଲ ହେ ପ୍ରକାଶ ।
ଆସିଛନ୍ତି ଶୂନ୍ୟ ଗଙ୍ଗାନୀର ହେ । ୧ ।
ଦ୍ୱାରେ ଛନ୍ତି ଗୁଣ ନାମ । ସାଣ ବାନ୍ଧି ନିତ୍ୟକର୍ମ ।
ଆବର ସେ ଗୁଣ ବ୍ରହ୍ମ । ଶାନ୍ତ ଶୀଳ ଦୟା ଧର୍ମ ।
ଆସିଛନ୍ତି ଦର୍ଶନେ ତୁମ୍ଭର ହେ । ୨ ।
ନିରାକାର ଆଦିକନ୍ଦ । ସଙ୍ଗେ ଘେନ ବସ୍ତୁବୃନ୍ଦ ।
ମନେ ହୁଅବ ଆନନ୍ଦ । ଜଣାଇବେ ଭଲ ମନ୍ଦ ।
ଦୁଃଖ ସୁଖ ପ୍ରଭୁ ଶ୍ରୀଗୁରୁର ହେ । ୩ ।
ମହାନିତ୍ୟ ଭକ୍ତଗଣ । ସ୍ୱାଗତ କର ଆହ୍ୱାନ ।
ସର୍ବେ ବ୍ରହ୍ମର୍ଷି ବ୍ରାହ୍ମଣ । ମୁଖେ ଗାୟତ୍ରି ବଖାଣ ।
ଆଜ୍ଞା ହେଲେ ସେବବେ ପସ୍ତର ହେ । ୪ ।

ଅଙ୍ଗଲଗି ସେବାକାଣ୍ଡ । ଅଗଣାରେ ଛନ୍ତି ଦୂର ।
ବଚନକୁ ଅନୁସର । ହୃଦେ ମନ୍ଦମା ସୁମର ।
କାକୁସ୍ଥରେ ଶିରେ । ଯୋଡ଼ି କର ହେ ।୫।

ଯୋଗନିଦ୍ରା ତେଜଗୁରୁ । ହଠ ନିଜ ଆସନରୁ ।
ଦଣ୍ଡ ପ୍ରଲମ୍ବିତ ଦୂରୁ । ଥାଇ କବାଟ ଦୁଆରୁ ।
ଭଣେ ଭୀମ ଅଜ୍ଞାନ ପାମର ହେ ।୬।

( ୭୨ )

ଅନ୍ତର୍ଯାମୀ ସମ୍ଭାଳ ଶରଣ ହେ, ଶୂନ୍ୟବ୍ରହ୍ମ
ଦଅ ଦରଶନ । ଘୋଷା ।

ପଶ୍ଚିମ ଦ୍ୱାରେ ଅନନ୍ତ ଶଙ୍ଖିନୀ ମନ୍ଦିର ଘାତ,
ମନ କାମନା ବାଞ୍ଛିତ ଦରଶନରେ ଆଗତ
କରୁଛନ୍ତି, ନାମକୁ ଗାୟନ ହେ । ୧ ।

ପରମ ଉତ୍ତର ଦ୍ୱାରେ ଚନ୍ଦ୍ର ନବେଗି ଶୂନ୍ୟରେ,
ଧାଇ ଶ୍ରୀଗୁରୁ ପଦ୍ମରେ କରପଦ୍ମ ଯୋଡ଼ି ଶିରେ,
ଲଭିଅଛୁ ଶ୍ରୀମୁଖେ ଭଜନ ହେ । ୨ ।

ଦଶଦ୍ୱାରେ ଭ୍ରମ ହରି ବଜାଇ ବୀଣା ବାଂଶରୀ
ଦରଶନେ ଇଚ୍ଛା କରି ନାଚୁଛନ୍ତି ଖେଳେ ପଢ଼ି
ଜୟଶଙ୍ଖ ସ୍ଥିରେ ଘନ ଘନ ହେ । ୩ ।

---

୭'—୧-୨ ସମ୍ଭାଳି ଶରଣ ହେ ନାରାୟଣ ଅନ୍ତର୍ଯାମୀ ଦଅ ଦରଶନ;
୭୨—୭ ପରମ ଉତ୍ତର ଦଗେ,

ଦକ୍ଷିଣରେ ଜଗନ୍ନାଥ, ଦ୍ୱାରେ ଆସି ପ୍ରବେଶିତ,
ବେଡ଼ ପଡ଼ ଅପ୍ରମିତ, ରହିଛନ୍ତି ଯୂଥ ଯୂଥ,
ଦରଶନେ ସବୁଙ୍କର ମନ ହେ । ୪ ।

ଚଉଦଗରେ ଚହଲ, ଶୁଭେ ମୁଖରବ ଗୋଳ,
ଅବନାପୁର ମଣ୍ଡଳ, ଶବଦରେ କୋଲାହଲ,
ସ୍ୱର୍ଣଦ୍ୱାରେ ଲଗିଛି ଭଜନ ହେ । ୫ ।

ଶ୍ରୀଗୁରୁଚରଣେ ଚିତ୍ତ, ଭଣେ ଭୀମ ଅରକ୍ଷିତ,
କରାଅ ଭୃତ୍ୟର ଭୃତ୍ୟ, ଏତିକ ମୋର ବାଞ୍ଛିତ,
ମାଗୁଅଛି ଜୀବ ପଣଥାଣ ହେ । ୬ ।

( ୬୩ )

ସିଂହଦ୍ୱାରେ ସବେ ରହିଛନ୍ତି ହେ, ପାଶେପଥ,
ଆସି ଯଥ ସନ୍ତ । ଘୋଷା ।

ବ୍ରହ୍ମବାସୀ ମୁନିଗଣେ, ଆସିଛନ୍ତି ଦରଶନେ,
ବେଦମୁଖୀ ବ୍ରହ୍ମମାନେ, ହରଷିତ ପାଦ ଗମନେ,
ବେଦ ଧ୍ୱନି ଦ୍ୱାରେ କରୁଛନ୍ତି ହେ । ୧ ।

ଆସିଛନ୍ତି ରୁଦ୍ରକୁଳ, ଘେନି ଡମ୍ବରୁ ତ୍ରିଶୂଳ
ଅଷ୍ଟକୁଳା ନାଗବଳ ଅଣି କ୍ଷୀରସିନ୍ଧୁ ଜଳ
ଅବ୍ୟକତ ବସ୍ତୁ ଆସିଛନ୍ତି ହେ । ୨ ।

---

୬୨—୧୭ - ଅବନାପୁର ମଣ୍ଡଳ, ଭକ୍ତ ହୁଏ ବେଳୁ ବେଳ,
୬୨—୧୮ ସ୍ୱର୍ଣଦ୍ୱାରେ ହେଉଛି କୀର୍ତ୍ତନ

ସୁରପତି ଶଚୀଇନ୍ଦ୍ର, ସଙ୍ଗେ ଘେନି ଦେବବୃନ୍ଦ,
ବଜାଇ ଦୁନ୍ଦୁଭି ବାଦ୍ୟ, ନାଚୁଛନ୍ତି ଉନମାଦ,
ପାରିଜାତ ପୁଷ୍ପ ଆଣିଛନ୍ତି ହେ । ୩ ।

ସ୍ୱର୍ଗପୁର ହୋଇ ଠୁଳ, ପଢ଼ୁଅଛନ୍ତି ମଙ୍ଗଳ,
ଦରଶନେ ଆଖଣ୍ଡଳ ଭକ୍ତି ହୋଇ ବେଳୁ ବେଳ,
ବାଟ ନାହିଁ ଛନ୍ତି ଯନ୍ତାଯନ୍ତ ହେ । ୪ ।

ଛପ୍ପନ କୋଟି ଜୀବ ଯେତେ, ଆଶା କରିଛନ୍ତି ଚିତ୍ତେ,
ପଙ୍କ୍ତି ପାଇବା ନିମନ୍ତେ, ହସ୍ତକୁ ପାତି ସମସ୍ତେ,
ନେଲେ ଯାଇ କୁଟୁମ୍ବ ପୋଷନ୍ତି ହେ । ୫ ।

ଭଣେ ଭୀମସେନ ଖେଇ, ଶ୍ରୀଗୁରୁଚରଣ ଧ୍ୟାଇ,
ଥିବେ କେତେ ଠିଆ ହୋଇ, ଦୟା ହେଲେ ଯିବେ ସେଥି,
ଜଣାଉଛୁ ଘେନ ମୋ ବିନତି ହେ । ୬ ।

( ୬୪ )

(୪) ବିଦା ହେଲେ ସେଥାପୁର ଯିବେ ହେ । ଚାଲ ଏବେ ।
ଅନୁକୂଳ ଶୁଭେ । ଘୋଷା ।

ଦୂରଦେଶ ଭକ୍ତମାନେ । ଆସିଛନ୍ତି ଦରଶନେ ।
କିଛୁ ନ ବୁଝଇ ଆନେ । ଧାଇଁଛନ୍ତି ଅନୁକ୍ଷଣେ ।
ନାମେ ଖେଳ ହେଉଛନ୍ତି ସବେ ହେ । ୧ ।

---

୬୩—୧୦—ବଜାଇ ଦୁନ୍ଦୁଭି ବାଦ୍ୟ, ମନେ ଉତ୍ସବ ଆନନ୍ଦ,
୬୩—୧୨—ସ୍ୱର୍ଗପୁର ଭକ୍ତକୁଳ,
୬୪—୩—ଆସିଛନ୍ତି ସନ୍ନିଧାନେ
୬୪—୪—ଧାଇଁଛନ୍ତି ଅନୁକ୍ଷଣେ

ଦେଖ ପ୍ରଭୁ ଅନାଦି ତ । ଅଶେଷ ଜଗତ ହିତ ।
ଟାକଅଛନ୍ତି ଭଗତ । ଆନନ୍ଦରେ କୃତ କୃତ ।
ନଚନ୍ତିରେ ପଦ୍ମପାଦେ ଲଗେ ହେ । ୨ ।

ଯାଅ ବୋଇଲେ ନ ଯାନ୍ତି । ପଛଆରେ ରହିଛନ୍ତି ।
ମାଗୁଛନ୍ତି ପଦଗତି । ଦମ୍ଭେ ରହୁ ନାହିଁ ମତି ।
ଆପଣଙ୍କୁ ଦେଖିବାର ଲୋଭେ ହେ । ୩ ।

ଗୁହାରିଆ ଆସିଛନ୍ତି । ଦୋଷମାନ କରିଛନ୍ତି ।
ବିକଳ ହେଲେଣି ଅତି । କ୍ଷମାକର ଦଣ୍ଡ ଶାସ୍ତି ।
ଅପରାଧ କରିଛନ୍ତି ପୂର୍ବେ ହେ । ୪ ।

ହେଉଛନ୍ତି ଥରହର । ହୃଦସ୍ଥ ଛନ୍ନ କାତର ।
କରିବ ଯେବେ ଉଦ୍ଧାର । କସ ବିବ୍ଧୁଛ ଆର ।
ଗୁରୁ ପଗ ଅଟ ଚରଣଯୁଗେ ହେ । ୫ ।

ଶ୍ରୀକର ପାରୁଶେ ରହି । ଭଣେ ଭୀମସେନ ଭୋଇ ।
ଧରି ପାଦପଦ୍ମ ଦୁଇ । ଅନେକ କହେ ବିନୋଇ ।
ହସ୍ତ ହୋଇ ପ୍ରଭୁଙ୍କର ଅଗେ ହେ । ୬ ।

( ୬୫ )

(୧) ଅଣାକାର ଅଟରୂପେ ପ୍ରକାଶ । କିଛି ନ ଦିଶନ୍ତି ଶୂନ୍ୟ ଆକାଶ । ଘୋଷା

ବର୍ଣ୍ଣଭେଦ ନାହିଁ କି ବର୍ଣ୍ଣ ବର୍ଣ୍ଣିବ, ଅବର୍ଣ୍ଣ ସେ ପୁରୁଷ । ୦ ।
ପାଦ ପାଣି ନାହିଁ କି ସେବା କରିବେ, ଖରେ ହୁଅନ୍ତି ଦୃଶ୍ୟ । ୨ ।
କଟି ନାହିଁ ଆଡ଼ବନ୍ଧ କହପୁନ କାହିଁ ପିନ୍ଧିବେ କିସ । ୩ ।
ନାହିଁ କରପଣା ହୃଦସ୍ଥ ମଣ୍ଡଳ, ନାହିଁ ଉର ସନ୍ଦେଶ । ୪ ।

ତାହିଁ ନ ବୁଝନ୍ତି ଛଡ଼ାଇ ନୁଅନ୍ତି, ନ କରନ୍ତି ବିଶ୍ୱାସ । ୫ ।
ଭଣେ ଶ୍ରୀମନ୍ଧାନ ପାମର ଅଜ୍ଞାନ, ଗୁରୁ ପଦ୍ମରେ ଆଶ । ୬ ।

( ୬୨ )

(୨) କଳିଯୁଗେ ବୈଷ୍ଣବ ମରଠ ।
ନର ଅଙ୍ଗେ ସ୍ୱାମୀ ବଳେ ଧରଠ । ଘୋଷା ।

ନିଷ୍କାମ ଧର୍ମରେ    ସତ୍ୟବାଦ କର୍ମରେ
ରହିଛୁ ନବ ଷିଡା ୧ ।
ବୃଦ୍ଧତନୁ କ୍ଷୀନ    ଶ୍ୟାମଳ ବରଣ
ସେ ସ୍ୱରୂପ ଦଶନ୍ତି । ୨ ।
ଅରକ୍ଷିତ ବେଶ    ମୁକୁଳିତ କେଶ
ଭିକ୍ଷା ମାଗୁଅଛନ୍ତି । ୩ ।
ସାକ୍ଷାତେ ସେ ବ୍ରହ୍ମ    କଥା କହୁଛନ୍ତି
ନାହିଁ ଚିହ୍ନୁଅଛନ୍ତି । ୪ ।
ଦୀକ୍ଷା ଅବଧୂତ    ମହିମା ବିଖ୍ୟାତ
ଭୂମେରେ ସେ ଶୁଅନ୍ତି । ୫ ।
ଶ୍ରୀମ ଅରକ୍ଷିତ    ଗୁରୁ ପାଦଗତ
ମାଗୁଅଛୁ ବନଠ । ୬ ।

( ୬୩ )

(୩) ବ୍ରହ୍ମଜ୍ଞାନ କହେଛନ୍ତି ବିସ୍ତାର । ଭଗତ ହେ ଅଛି ସନ୍ଧାଳି ଧର ॥
ନିଜ ନାମ ଯାହା, କହି ନୋହେ ତାହା, ନ ବସଇ ଅକ୍ଷର । ୧ ।

---

୬୨—୧—ଅବଧୂତ ମରଠ

ଶବଦ ଯେତେକ, ବେଦାନ୍ତ ତେତେକ, ପ୍ରଚରୁଛୁ ସଂସାର । ୨ ।
ଅନାଦି ପୁରୁଷ, ଯାହାକୁ ବୋଲନ୍ତି, ଅନ୍ତ ନାହିଁ ତାହାର । ୩ ।
ଗୁରୁଦେବ ସ୍ୱାମୀ, ଯେହୁ ସେ ଅନନ୍ତ, ସାର ଜ୍ଞାନ ଭଣ୍ଡାର । ୪ ।
ମହିମା ନାମଟି, ଯେହୁ ବୋଲୁଛନ୍ତି, ଅଗାଧ ସେ ସାଗର । ୫ ।
ଗୁରୁ ପାଦ ଧ୍ୟାଇ, ଭଣେ ଭୀମ ଭୋଇ, ନଷ୍ଟେ ହେବ ହଙ୍କାର । ୬ ।

( ୬୮ )

(୪) କଲି ଭାଙ୍ଗି କରିବେ ସତ୍ୟ ଯୁଗ
ବ୍ରହ୍ମାଣ୍ଡରେ ଧ୍ୱଜ ଜାଗିଲେ ଅଗ । ଘୋଷା ।

ଷୋଳ ପ୍ରାପ୍ତେ ହୋଇ । ଜମ୍ବୁ ଦ୍ୱୀପ ମଧ୍ୟ । କଲେଣି ସାଧୁସଙ୍ଗ । ୧ ।
ଯେ ହେବ ଅତିଥ । ସେ ହେବ ମୁକତ । ବୁଝିଲେ ଭେଦ ମାର୍ଗ । ୨ ।
ମନ ବାଞ୍ଛା ସିଦ୍ଧି । କରିବେ ଅନାଦି । ପାଇବେ ରାଜଭୋଗ । ୩ ।
ଗୃହିଁ ବୃକ୍ଷ ରୂପ । ଇଚ୍ଛି ଘୋର ତପ । ଅଛୁ ଯେମନ୍ତେ ଲାଭ । ୪ ।
ଏ ପିଣ୍ଡ ବ୍ରହ୍ମାଣ୍ଡ । ସେ ବ୍ରହ୍ମ ଅଖଣ୍ଡ । କରିଅଛୁ ସଂଯୋଗ । ୫ ।
ଭୀମ ଅରକ୍ଷିତ । ଗୁରୁ ପାଦେ ଚିତ୍ତ । ଥିବ ଯେମନ୍ତେ ଭାଗ୍ୟ । ୬ ।

( ୬୯ )

(୧) ଶୂନ୍ୟ ପୁରୁଷ ମର୍ତ୍ତ୍ୟରେ ଖେଳୁଛନ୍ତି ହେ ।
ନରରୂପେ ଦେବାଦେବୀ ଖଟିଛନ୍ତି ହେ । ଘୋଷା ।

ସେହି ଏକା ମହାଗୁରୁ । ବିଜୟେ ଶୂନ୍ୟମନ୍ଦିରୁ ।
ସଂଶୟ ଛାଡ଼ି ହୃଦରୁ । କର ସ୍ତୁତି ହେ । ୧ ।
ସେହିଟି ଜୀବର ଧନ । ଅପ୍ରତେ ନ କର ମନ ।
ଭଲ କରି ଏବେ ଚିହ୍ନ । ଧର ଚେତି ହେ । ୨ ।

ଠାକୁର ମହିମା ସେହି । ଏକା ଗୁରୁ ମନ୍ତ୍ରମାହିଁ ।
ଧନ୍ଦ ହେଉଛ କପାଇଁ । କର ଯୁକ୍ତି ହେ । ୩ ।

ବେଲ ଆଉ ବସାଧର । ଜ୍ଞାନେ ସାଧୁ ସଙ୍ଗ କର ।
ସ୍ମୁରେ କର ଗୋଚର । ଦେବେ ସ୍ଥିତି ହେ । ୪ ।

ତୋଲ ଷଟଚକ୍ର ମନ୍ଦର । ପଡ଼ୁଛି ଛକ୍ର ଭ୍ରମର ।
ନେଡ଼ିଛନ୍ତି ପୁର ନର । ଚଉକଣ୍ଠ ହେ । ୫ ।

ଶ୍ରୀଗୁରୁ ଚରଣେ ଧ୍ୟାଇ । ଭଣେ ଭୀମସେନ ସ୍ନେଇ ।
ଆନନ୍ଦେ ଶୋଭା ପାଉଛୁ । ଏ ଧରଣ ହେ । ୬ ।

( ୭୦ )

( ୨ ) ଭାଗ୍ୟ ଥିଲେ ଧର ଧର ପଦ୍ମପାଦ ହେ ।
ଖଣ୍ଡିବ କାଳ ବିପତ୍ତି ପରମାଦ ହେ । ଘୋଷା ।

କରିଅଛ ଯେବେ ଦୋଷ । ଜଣାଅ ଶ୍ରୀଗୁରୁ ପାଶ ।
ଛେଦ ହୋଇବ ଉଲ୍ଲାସ । ଅପରାଧ ହେ । ୧ ।

ପାପ ପୋଡ଼ିବ ବ୍ରହ୍ମରେ । ନାମ ଅଲେଖ ଧର୍ମରେ ।
ଭଜ ସାତ୍ତ୍ୱିକ କର୍ମରେ ନିରବେଦ ହେ । ୨ ।

ସତ୍ୟ ଅଟେ ଏ ଦୁଆର । ମନେ ଅପ୍ରତେ ନ କର ।
ପଶ୍ଚାତେ ହେବ ଅସାର ପରମାଦ ହେ । ୩ ।

ଶକତ ଯାହାର ଥିବ । ନିଶ୍ଚେ ଭକତ ଲଭିବ ।
ଗୁରୁପାଦବନ୍ଦ ଅଟେ ସାର ପଦ ହେ । ୦ ।

ଅରୂପ ରୂପ ସ୍ୱରୂପ । ନୟନ ପୂରାଇ ଦେଖ ।
ବୁଦ୍ଧିରେ କରି ବିବେକ ହେବ ସିଦ୍ଧ ହେ । ୫ ।

ଓଁକାର ପରମ ପାଦୁଁ । ପିଅ ମକରନ୍ଦ ମଧୁ ।
କହେ ଭୀମ ଅରକ୍ଷିତ ଅତି ସ୍ୱାଦ ହେ । ୬ ।

( ୬୧ )

( ୩ ) ମହାନନ୍ଦ୍ୟ ଖେଳ ଦେଖେ ଜମ୍ବୁଦ୍ୱୀପେ ।
ଶସ୍ୱର୍ଥ ପରକାଶେ ବାହ୍ୟରୂପେ ହେ । ଘୋଷା ।
ସତ୍ୟାଦ୍ଧ ଯୁଗେ ଜଗତ । ଯାର ପାଇଁ ତପୋବନ୍ତ ।
ଅଶେଷ ବ୍ରହ୍ମାଣ୍ଡ ହତେ ଜନେ ଆପେ ହେ । ୧ ।
ତ୍ରେତୟା ଯୁଗରେ ତପୀ । ଭକ୍ତମାନେ ହେଲେ କପି ।
ସେହ୍ନ ବ୍ରହ୍ମଙ୍କୁ ନରେପି ଆତ୍ମାସୁଖେ ହେ । ୨ ।
ଦ୍ୱାପର ଯୁଗକୁ ଯୁହି । ବ୍ରଜ ଗୋପାଳୁଣୀ ହୋଇ ।
ବ୍ରହ୍ମଅଙ୍ଗେ ପ୍ରେମ ସଙ୍ଗେ ଚିତ୍ତ ରୂପେ ହେ । ୩ ।
ଏ କଳିଯୁଗରେ ଦେଖ । ଗୃହୀଯୁଗ ଭକ୍ତହୃଦ ।
ହୋଇଲେଣି ବ୍ରହ୍ମଲୋକ ପୂର୍ଣ୍ଣ ତପେ ହେ । ୪ ।
ଜନମି ଗୃହଦରେ । ବାହ୍ୟନ ପାତକ ଘରେ ।
ଉଦ୍ଧାଲେଣି ଠାବେ ଠାବେ ଧାଇ ଥୋକେ ହେ । ୫ ।
ଭଣେ ଭୀମ ସ୍ୱାନ ଭୋଇ । ସମସ୍ତେ ପାଇବେ ଜାହି ।
ସଦଜ୍ଞାନ ମୁକ୍ତି ପଦ ଗୁରୁ ମୁଖେ ହେ । ୬ ।

( ୬୨ )

( ୪ ) ଘୋଟିଲଣି ଆସି କଥା ଦେଖୁଁ ଦେଖୁଁ ହେ ।
ମନୁଷ୍ୟ କ ପ୍ରଭୁ ସେହ୍ନ ତହ୍ନ ତାଙ୍କୁ ହେ । ଘୋଷା ।
ନିର୍ଗୁଣ ସେ ହୋଇଥିଲ । ମହାଶୂନ୍ୟ ନିତ୍ୟଲୀଳା ।
ଦେବ ମାନବରେ ଖେଳା ଏ ଯୁଗକୁ ହେ । ୧ ।

---

୬୧—୫—ଯୁଗରେ ଜପି

ଅନନ୍ତଙ୍କ ଖେଳ ଏହୁ । କେ କହିବ ଦେହୁ ବନ୍ଧୁ ।
ହାସ୍ୟ ରଙ୍ଗ କରୁଅଛ ସେ ପ୍ରଭୁଙ୍କୁ ହେ । ୨ ।

ଶ୍ରୀଗୁରୁଙ୍କ ଆଜ୍ଞା ପାଇ । ବୃଶନ୍ଧଗୁଁ ଭକ୍ତେ ଯାଇ ।
ଅର୍ଘ୍ୟସ୍ଥାଳୀ ବନ୍ଦାଇଲେ ସେ ପ୍ରଭୁଙ୍କୁ ହେ । ୩ ।

ଫୁଲ ଚନ୍ଦନ କର୍ପୂର । ସପ୍ତାମୃତ ଯେ ସମ୍ଭାର ।
ଶିଧପ ଥାଳଠମାନ ମଙ୍ଗଳକୁ ହେ । ୪ ।

ନାମଧ୍ୱନି ହୁଳହୁଳି । ମନ୍ତ୍ର ପଢୁଛୁ ଉଚ୍ଛୁଳି ।
ପ୍ରଚଣ ଘଳଶୀ ତାଳ ଶିପୁରକୁ ହେ । ୫ ।

ଶ୍ରୀଗୁରୁଚରଣେ ଧାଇ । ଭଣେ ଶ୍ରୀମଯୋଳ ଶୋଚ ।
ଦୟା ନଥି ଖୋଜୁଅଛୁ ସେ ପ୍ରଭୁଙ୍କୁ ହେ । ୬ ।

( ୧୩ )

(୧) ଶୂନ୍ୟବାସୀ ମନ୍ତ୍ରୀ ଆସି, ବଳଏ ଯେ ରଖିଛଲେ । ଘୋଷା ।
ଲୋଡ଼ି ଯାଇ ଦ୍ୱାରଦେଶେ । ଏକମନ ହୋଇ ଯତେ ।
ନଷ୍ଟଟେ ପାଇବ ଭେଟ ହୃଦେ ସ୍ମରଣ କଲେ । ୧ ।
ଉଚ୍ଚବାଚ କଥା ଛାଡ଼ । ନିଷ୍କାମ ପ୍ରେମରେ ବୁଡ଼ ।
ପ୍ରସନ୍ନ ହୋଇବେ ପ୍ରଭୁ ସନ୍ଧି ଇଚ୍ଛା ଛନ୍ଦି ଥିଲେ । ୨ ।
ମନ ମୋର ହୋଇବାକୁ । ଶ୍ରୀଗୁରୁ ମନ୍ତ୍ରୀ ଦେଲେ ନିକୁ ।
ପଥରେ କର୍ଣ୍ଣେ ଦେଲେ ଏବେ ହୋ ଚେତ କଲେ । ୩ ।
ଏକାକ୍ଷର ପାଦ ଧ୍ୟାଇ । ତାଙ୍କ ଏକ ମୁଖ୍ୟ ହୋଇ ।
ଗୋଁପ୍ୟାନରେ ଦେହ ଧରିଛନ୍ତି ଅବନୀ ମଣ୍ଡଳେ । ୪ ।
ଅନ୍ଧାର ହେଲ ବ୍ରହ୍ମାଣ୍ଡ । ଜମ୍ବୁଦ୍ୱୀପ ନବଖଣ୍ଡ ।
ରହିଲ ଯେବେ ସେ ପୁର ଠାବ କର ଦେଖ ହେଲେ । ୫ ।

ଯେ ଅଦା ଅଛ ଭଗତ । ସମ୍ମାନ ରଖ ଜଗତ ।
ଭଣେ ଖ୍ରୀମକନ୍ଦ ସ୍ତୁତି ଦଅଅ ଏ କଳିକାଳେ । ୬ ।

( ୭୦ )

(୨) ଧର୍ମ ଧାରଣେ ଧର୍ମ ରହିଛି କଳିଯୁଗରେ । ଘୋଷା ।
ଶାନ୍ତ ଶୀଳ ଦୟା କ୍ଷମ । ଏହା ପାଳନ୍ତି ଯେ ଜନ ।
ଆତ୍ମା ଚହ୍ନି ଅନ୍ନ ଦାନ ଦେଲେ ବଶ ହେବେ ତାରେ । ୧ ।
ନାମରେ ଶରଣ ଯାଅ । ଜୀବ ପରେ ଦୟା ବହ ।
ଏ ଧର୍ମର ସାର ଆଉ ନାହିଁ ନା ଏ ସଂସାରେ । ୨ ।
ଶଙ୍ଖ ସର୍ବେ ଜ୍ଞାନ କର । ତେବେ ପାଇବ ଗୋଚର ।
ସେ ଅଲେଖ ଅଣାକାର ଅଛନ୍ତି ସର୍ବ ଘଟରେ । ୩ ।
ଅନ୍ତର୍ଯାମୀ ସେ ପୁରୁଷ । ଅଟେ ମହିମା ଅଶେଷ ।
ସେବା ଭକତଙ୍କ ଜାଣି ଦୃଶ୍ୟ ହୋଇବେ ଭବରେ । ୪ ।
ମନ ମଧ୍ୟେ କଲେ ତତ୍ତ୍ୱ । ତେବେ ଅଛୁ ସତ୍ୟ କୃତ୍ୟ ।
ବଚ୍ଛିଲେ ପାଶେ ଛନ୍ତି ଉଦାର ଭକ୍ତ ହୃଦରେ । ୫ ।
ଦେହ ଦେଇଁ ଲୁଦ୍ଧ ହେ । ହୃଦରେ ସନ୍ତୋଷି ଭୁଏ ।
ଭଣେ ଭୀମ ଭକ୍ତ କେଯା ଲୋଡ଼ୁଅଛୁ ନିରନ୍ତରେ । ୬ ।

( ୭୧ )

(୩) ଜଗତ ଭଗତ ଜନ ଆସ ଲୋଡ଼ିବା ପ୍ରଭୁଙ୍କୁ । ଘୋଷା ।
ଶ୍ରୀପୁରୁଷୋତ୍ତମେ ଜାଣ । ଥିଲେ ଯେଉଁ ନାରାୟଣ ।
ସେ ପ୍ରଭୁ କାହିଁ ରହିଲେ । ଭେଟିଲେ ଛନା ଦାରୁକୁ । ୧ ।
ନାହିଁ ମା ଗୋସାଇଁ ଚୂଳୁ । ଯେହୁ ଥିବା ମହାପ୍ରଭୁ ।
ତହିଁ କଣ ଥିଲୁ ଆଶା । ଶୂନ୍ୟ ହେଲେ ଦେଖ ଦେଖୁ । ୨ ।

ସାଧୁ ସନ୍ଥ ସୁଜ୍ଞଜନ । ଯେ ଅଛ ଜଗତେ ଜାଣ ।
ଶ୍ରୀକମ ତ୍ରିକୂମ ଯେତୁ । କହୁଅଛୁ ସମସ୍ତଙ୍କୁ । ୩ ।

ଗୃହଦରେ ଗୃହ ଧାମ । ଗୃହକର୍ମ ଗୃହ ନାମ ।
ଏଥି ଅବା ପ୍ରଭୁ ଥିବେ ପୁଛ ପଣ୍ଡିତ-ଜନଙ୍କୁ । ୪ ।

ଏତେ କଥା ହେଇଲଣି । କେହ୍ନ ନ ପାରୁଛ ଜାଣି ।
ଶପଥି ଆଗମ ଅଛୁ ଏ ସଂସାରସାଗରକୁ । ୫ ।

ଭଣେ ଖ୍ରୀମଭୋଇ କନ୍ଧ । କଥାକୁ ନ ବୁଝ ମନ୍ଦ ।
ବ୍ରହ୍ମାଣ୍ଡ ରହିବ ନୋହି ପରତେ ନାହିଁ ମନକୁ । ୬ ।

( ୬୭ )

(୪) ପୃଥୀ ହେଲଣି ଅନ୍ଧାର ସନ୍ଥାଳ କେ ଅଛ ଯେବେ । ଘୋଷା ।
କିବା ବେଦାନ୍ତୀ ସିଦ୍ଧାନ୍ତୀ । କିବା ନାଗାନ୍ତୀ ଯୋଗାନ୍ତୀ ।
କି ଅବା ସେ ସନ୍ଥ ସତୀ । ବ୍ରହ୍ମାଣ୍ଡକୁ ରଖ ଏବେ । ୧ ।

ଦ୍ୱୋପାରେ ଧର୍ମ ସ୍ଥାପିଲେ । ଶ୍ରୀଗୁରୁ ଗୋପ୍ୟାନ ହେଲେ ।
ନୂଆଗ ରଞ୍ଜନା ହେବ । ଶାସ୍ତ୍ରେ ଶୁଣିଥିଲ ପୂର୍ବେ । ୨ ।

କେବଣ ଧର୍ମରେ ପୃଥ୍ୱୀ । ରହିବ ଯଣ କାରଣ ।
ଯେମନ୍ତେ ସତ୍ୟ ଗଚ୍ଛିବ । ସେ ଧର୍ମକୁ ଧର ସବେ ।  ।

ନାମ ବ୍ରହ୍ମେ ଯେ ଆଶ୍ରିତ । ପାଇବ ଗତି ମୁକତ ।
ଭବ ସାଗରୁ ତରିବ । ରହିବ ଅଲେଖ ଗତେ । ୪ ।

ଆମ୍ଭାକୁ କଲେ ଗୋଚର । ପାଇ ଆଦ୍ୟ ଅନ୍ତ ତାର ।
ଦୃଢ଼ଜନେ ସେବାକର । ନଷ୍ଟଏ ସେ ତାର ନେବେ । ୫ ।

---

୬୭—୯—ଅନନ୍ତ ଗଡେ

ଭଣେ ଖ୍ରୀମ ସ୍ଥାନ କନ୍ଧ । ଜୀବନ୍ତେ ହେଲଣି ବନ୍ଧ ।
ଜଣାଉଛୁ ପାଦ ବନ୍ଦ । ଶ୍ରୀଗୁରୁ ହେବେ ଜାଣିବେ । ୭ ।

( ୭୭ )

(୧) ସ୍ୱାମୀସେବା ଗୁରୁସେବା ସ୍ୱଦେହରେ କର ।
ସତ୍ୟ ଆଗ୍ରହେ ସାତ୍ତ୍ୱିକ ଧର୍ମକୁ ଦୃଢ଼ବନ୍ଧେ ଧର । ଘୋଷା ।
କୋଟି ଜନ୍ମ ଘୋର ତପସ୍ୟା ପୁଣ୍ୟରୁ ମନୁଷ୍ୟ ଜନ୍ମ ଏ ସାର ।
ଅଜ୍ଞାନରେ ଦିନ ଗଲା ହେ ସୁଜନ ଭଜ ଶ୍ରୀପଦ୍ମର । ୧ ।
ଗଜ ମୁକଜ ସମ୍ପତ୍ତି ଛାଡ଼ି ଦେଇ ମାୟାକୁ କରିଛ ସାର ।
ମାଡ଼ି ପଡ଼ିବ ଳହଡ଼ି ଘଡ଼ଘଡ଼ି ପଶ୍ଚାତ୍ତେ ଉପର । ୨ ।
ହେତୁ ଥାଉ ଆଶା ଲଗାଅ ଭରସା-ଟିଆକୁ ହେଉଛୁ ଦୂର ।
ଶୂନ୍ୟେ ଥିଲେ ଯେତ୍ତ ରବିତଳେ ସେତ୍ତ ସବୁର ଠାକୁର । ୩ ।
ନବଦ୍ୱାର ବାଟେ ପୂରିବ ଏ ଘଟେ କାରୁଣ୍ୟ ପ୍ରଳୟ ନୀର ।
ପାଇଛ ଯେତକ ନ ପାରିଲେ ରଖି ହେବ ନାରଖାର । ୪ ।
ସାକ୍ଷାତରେ ସତ ହେବ ପରପତ ଗୁରୁସେବା କଲେ ସାର ।
କାଳ ମାୟାଜାଲ ଛୁଡ଼ିବ ସକଳ ତେବେ ହେବ ପାର । ୫ ।
ନ ଦଣ୍ଡିବ ଯମ ପାଇବ ଆଶ୍ରମ ବସିବ ଅଭୟପୁର ।
ଭଣେ ଖ୍ରୀମକନ୍ଧ କବିକୁଳ ବୃନ୍ଦ ହେବ ଅଜାମର । ୬ ।

( ୭୮ )

(୨) ମାୟା ତେଜ ମୋହ ତେଜ ଅପରୂପ ଭେଦ ଘଟେ ଘଟେ ବାସ ।
ଅଲେଖ ପୁରୁଷ, ତାଙ୍କୁ କର ଠାବ । ଘୋଷା ।

ପବନ ପରୀଏ ସର୍ବାଙ୍ଗ ଶରୀରେ ଖେଳୁଛୁ ଶବଦ ନାଦ ।
କରୁଛୁ ଭ୍ରମଣି, ଫେରୁଛୁ ଉଜାଣି, କ୍ଷର ଏକପାଦ । ୧ ।

ଅନୁମାନ ଦ୍ୱାରେ, ଗମିବ ସେପୁରେ, ନଗମରୁ କ୍ଷର ପଦ ।
ଜିହ୍ୱା ନ ଲାଗଇ, ପାର ଯେବେ ଖାଇ, ତେବେ ପାଇ ସ୍ୱାଦ । ୨ ।

ଅରୂପକୁ ରୂପ କର, ମୁଖେ ଜପ ହୋଇବ ବଚନେ ସିଦ୍ଧ ।
ଅଦେଖା ଦେଖିଲେ, ଏ ଘଟେ ରଖିଲେ, ଆତ୍ମା ହେବ ବୋଧ । ୩ ।

ଶ୍ରୋତ୍ର ଚକ୍ଷୁ ନାସା ମୁଖ ଏ ସମସ୍ତ ସାକ୍ଷାତେ ଅଟନ୍ତି ବେଦ ।
ରଜ ବୀଜ ପାଞ୍ଚ ପଚଶ ପ୍ରକୃତି ଏକଠାରେ ମେଦ । ୪ ।

ସେ ବ୍ରହ୍ମକୁ ଧ୍ୟାଅ, ଚିତ୍ତ ଦୃଷ୍ଟି ଦିଅ, ନ କର ମନରେ ଖେଦ ।
କୋଟିଏ ଅନଳ, ତେଜ ପରବଳ, ପାପ ହେବ ଛେଦ । ୫ ।

ପରଚେ ହୋଇଲେ । ରହିବ ନଶ୍ଚଳେ । ନୋହିବ ଜନମ ବନ୍ଧ ।
ଭଣେ ଶ୍ୟାମକନ୍ଧ । ଜ୍ଞାନଭେଦ ବନ୍ଧ । ଫିଟିଅଛୁ ମୁଦ୍ର । ୬ ।

( ୭୯ )

ଇଚ୍ଛା ନାହିଁ ବାଞ୍ଛା ନାହିଁ ଏ ଧର୍ମରୁ ଅଧିକ ।
ଆତ୍ମାଜ୍ଞାନ ହିତ ନତେ କର ଚିତ୍ତ ବୃଦ୍ଧିରେ ବିବେକ । ଘୋଷା ।

ଧନ ଦାରା ସୁତ କଳତ୍ରଣୀ ସମସ୍ତ ଏ ମଥିକ ସଙ୍ଗ ଲୋକ ।
ମୋହୋ ମୋହୋ ବୋଲ ଅଛୁ ତୁ ଆବୋଧ ପଛେ ଦେବେ ଦୁଃଖ

---

୭୮—୩—ପବନ ପ୍ରାଏ ଏ ଶରୀରେ ସର୍ବାଙ୍ଗେ ଖେଳୁଛୁ ପରମ ନାଦ
୭୮—୪—ଫେରୁଛୁ ଉଜାଣି କରୁଛୁ ଭ୍ରମଣି ।
୭୮—୯—ପାଦ ହସ୍ତ ନାସା ଚକ୍ଷୁ କର୍ଣ୍ଣ ମୁଖ ଏ ଅଟେ ସାକ୍ଷାତେ ବେଦ
୭୮—୧୩—ରହିବ ନଶ୍ଚଳେ
୭୯—୨—ଆତ୍ମାଜ୍ଞାନ ହିତ ଲସ୍ତୁ କର ଚିତ୍ତ ବୃଦ୍ଧିରେ ବିବେକ ।

ସର୍ବାପଣ ଭଜ ଜୋନାଥବା ସ୍ଵକଲ ତହୁଁ ନାହିଁ କିଛୁ ସୁଖ ।
ବ୍ରହ୍ମକୁ ନ ଚିହ୍ନି ହେଲେ ନୃପମଣି ଲଭେ ଦୋଷ ପାପ । ୨ ।

ଷଣ୍ଢି ପଣ ବୁଦ୍ଧି ଯେମାନେ କରନ୍ତି ଅଜ୍ଞାନ ମୂଢ଼ ମୂରୁଖ ।
ଅଧୋଗତି ହୁଅନ୍ତି ନରକେ ପଡନ୍ତି ତହୁଁ ନାହିଁ ସୁଖ । ୩ ।

ନାମବ୍ରହ୍ମ ଲଭ ଜୀବକୁ ଧ୍ୟାଇଁ ଭି ପିଣ୍ଡକୁ କାରଣ ଦେଖ ।
ଛପନ କୋଟି ଜୀବ କରନ୍ତି ଯଜନା ଅନାଦି ଅଲେଖ । ୪ ।

ନାଦକୁ ରଚ, ଭେଦକୁ ପ୍ରକାଶ ହୁଅଇ ଦୋଷକୁ ଗୁପ୍ତ ।
ଡାକିଣୀ ମୁଦ୍ରାରେ ନ ମିଳାଇ ଥାନ୍ତି ଦେବ ନରାପଣ । ୫ ।

ମନକୁ ନ ଗ୍ରାହ୍ୟ କେଉଁରେ ନ ପଡି ଭଜ ଅଛି ଯାର ଶକ୍ୟ ।
ଭଣେ ଶ୍ରୀମ କବି କବି ବୀରବର ଅଭେଦ ଅରୂପ । ୬ ।

( ୮୦ )

ଭକ୍ତି କଲେ ସ୍ଥିର କଲେ ଅନ୍ତ ଲେଶ ପାଇବ ।
ମହୁଁ ମାୟାଗର ଏ ମଣ୍ଡମଣ୍ଡଳେ ଦୋଳଚନ୍ଦ୍ର ନାବ । ଘୋଷା ।

ଜଣେ ମଧ୍ୟରେ ଥିଲ ମୂଢ ହେଇ । ଦେବ ଆସି ଦେଲ ଜ୍ଞାନ ।
ଅବନାମଧରୁ ବିଳମ୍ବ ଶ୍ରୀଗୁରୁ ଭଜ ଥିଲେ ଯୋଗ୍ୟ ।

ବ୍ରହ୍ମମଣ୍ଡଳରୁ ଖସିଲ ବେଳରୁ । ଯାକୁ ଲକ୍ଷ ନାହିଁଥିବ ।
ବେଦଧରୁ ଆସି ନବେଦରେ ପଣି ସେବା ଯୋଗାଇବ । ୨ ।

ପୂର୍ବ ବାସନାରୁ କେତେ ଦୁଷ୍କୃତରୁ । ଲେଖା ହୋଇଅଛି ଆଗ ।
ଅକର୍ମ ବିକର୍ମ କରିପାରେ ସମ ଲଭେ ସାଧୁସଙ୍ଗ । ୩ ।

ଅନାଦି ବ୍ରହ୍ମରେ ଚିତ୍ତ କରନ୍ତେ । ଲଗାଇ ପ୍ରେମସୂତ୍ର ଥିବ ।
ଅସାଧନା ମାର୍ଗେ ଏକତ ସମ୍ଭବେ ଉପରେ ବସିବ । ୪ ।

---

୮୦—୧୦—ଲଗାଇ ପ୍ରେମସୂତ୍ରେ

ଧନୁ ଧନୁ ଜ୍ଞାନ ହୃଦରେ କାର୍ତ୍ତିକ । ଲଗାଇ ସେମନ୍ତ୍ର ଶର ।
ଅନାମ ନାମକୁ ଆତ୍ମେ କଲେ ଚକ୍ଷୁ । ଉଧାରଣ ଫେର । ୫ ।
ଅପୋଡ଼ା ବଂନକୁ ବଳାଅ ମନକୁ । ବେଳନ୍ତୁ କଣଥା ଠାବ ।
ଭଣେ ଶ୍ରୀମ କନ୍ଧ ଗୁରୁପଦବନ୍ଦ । ହେବ ଯେବେ ଯୋଗୀ । ୬ ।

( ୮୯ )

ନିର୍ବେଦ ଘରେ ଭେଦ ନାହିଁ ବ୍ରହ୍ମକୁ । ଘୋଷା ।
ନୁହେ ଶବଦ ଭେଦ, ଶୂନ୍ୟ ଅଟେ ଆନନ୍ଦ ।
ଜଳ ପବନ ନାହିଁ ନିଜ ଅଙ୍ଗକୁ । ୧ ।
ସ୍ୱର ଧରା ନୋହୁଛି, ନିଷ୍କାମ ଯୋଗେ ଅଛି ।
ନିଗମ ଅଟଇ ପଥ ସେ ଭୁବନକୁ । ୨ ।
ଅଲେଖ ସ୍ୱାମୀ ଯେଣୁ, ନିର୍ବେଦ ସ୍ୱତନ୍ତ୍ର ସେଣୁ ।
ଅବେଦ ମାର୍ଗେ ଚଳ ସେ ମନ୍ଦିରକୁ । ୩ ।
ସର୍ବଙ୍କ ନୋହେ ଦୃଶ୍ୟ, ଅଛି ନିଜ ଅଶେଷ ।
ସଙ୍ଗ କରିଛି ଏକା ସତ୍ୟ ଧର୍ମକୁ । ୪ ।
ବ୍ରହ୍ମ ସମାନେ ଶୂନ୍ୟେ, ଅଛି ଆତ୍ମର କଣେ ।
କେହି ନ ଜାଣେ ତାଙ୍କ ନିଜ ନାମକୁ । ୫ ।
ଭଣିଲେ ଶ୍ରୀମ କନ୍ଧ, ବେଦ ପଦକେ ଭେଦ ।
ଅନୁସର ରହିଛି ପାଦବନ୍ଦକୁ । ୬ ।

( ୮୨ )

ଫେଡ଼ି କବାଟ ଯାଅ ପଶି ଭିତରେ । ଘୋଷା ।

---

୮୯—୯୦—ବ୍ରହ୍ମ ଉପରେ ବ୍ରହ୍ମ ଶୂନ୍ୟେ ରହିଛି ମର୍ମ ।
ବ୍ରହ୍ମଠାରୁ ସମାନେ ଅଛି ଅନ୍ତର କଣେ ।

ପରଚେ ହେଲେ ତାଙ୍କୁ । ଭୟ ନାହିଁ କାହାକୁ ।
ଯଶଟୁ ଯିବ ମନୁ ସେବ ପଦ୍ମରେ । ୧ ।

ଓଁ ମ, ବେଦାକ୍ଷର । ଜ୍ଞାନୀଜନେ ବିଚାର ।
ଏକତ୍ର କର ଯୁକ୍ତ ତ୍ରିବାଣୀରେ ୨ ।

ପାଦରୁ ଫେଡ଼ି ପଦ । ଅନାମେ କର ଭେଦ ।
ରହିବ ଏକା ଶୂନ୍ୟ ଯୁଗରେ । ୩ ।

ସମ୍ବାଦ ବ୍ରହ୍ମଯୋଗ । ଜନ୍ମବନ୍ଧ ନୋହିବ ।
ପ୍ରବେଶ ହେବ ଜୀବ ବ୍ରହ୍ମପୁରରେ । ୪ ।

ରୂପ ଅରୂପ ଦୁଇ । ଛନ୍ଦ ସମାନ ହୋଇ ।
ମଧ୍ୟେ ଅଭ୍ରପୁର ଅଛି ସେଠାରେ । ୫ ।

ଭଜିଲେ ସ୍ୱାମ ଜନ୍ମ । ବନ୍ଧୁନ୍ତ ମକରନ୍ଦ ।
ଉଚ୍ଛିଷ୍ଟ ନାହିଁ ଜର ପିଅ ମୁଖରେ । ୬ ।

( ୮୩ )

ବ୍ରହ୍ମସାଗରେ ପିଣ୍ଡ ଝସାଅ ନେଇ । ଘୋଷା ।
ମହିମା ଯେ ସାଗର ତାହାଙ୍କୁ ଆଶ୍ରା କର ।
ଯାହା ବୋଲନ୍ତେ ଗୁରୁ ଆଜ୍ଞାକୁ ବହ । ୧ ।

ତତ୍ତ୍ୱ ଜଳେ ତରିବ ବ୍ରହ୍ମେ ଭେଟ ହୋଇବ ।
ତ୍ରିଗୁଣ ଛାଡ଼ିଯିବ ନିଷ୍କାମ ହୋଇ । ୨ ।

ମନୁଷ୍ୟ ଜନ୍ମ ସାର ଏ ଦେହେ ହେତୁ କର ।
ଦୁର୍ଲ୍ଲଭ ପିଣ୍ଡ ଆଉ ପାଇବ ନାହିଁ । ୩ ।

---

୮୨—୮—ଜନ୍ମବଧ; ୮୨—୯—ପ୍ରବେଶ ହେବ ହେ ଯାଇ ନିଜବ୍ରହ୍ମରେ
୮୩—୨—ମହିମା ଯେ ସାଗର—ତହିଁରେ ବୁଡ଼ିପର
୮୩—୩—ଦୁର୍ଲଭ ପିଣ୍ଡ ଆଉର ପାଇବ କାହିଁ ।

ଅଖଣ୍ଡ ବ୍ରହ୍ମ ଯେହୁ    ଖଣ୍ଡ ଖଣ୍ଡ ନୁହଇ
ଆଶ୍ରିତ କଲେ ଯାଇଁ ଭବବ ମଧ୍ୟା । ୪ ।
ସେହୁ ପ୍ରଭୁଙ୍କ ଦାନ    ବାଅ ପିଣ୍ଡ ପରାଣ ।
ମୁକ୍ତ ପାଇବ ବ୍ରହ୍ମ ଭେଟିଲେ ଯାଇ । ୫ ।
ଭଣିଲେ ଭୀମ କନ୍ଧ    ପଦ ଅଟେ ବନ୍ଧନ ।
ଜ୍ଞାନୀ ଜନଙ୍କୁ ବିନା ଧର୍ମ ରୁଚଇ । ୬ ।

( ୮୪ )

ଚନ୍ଦ୍ରି ଭଜଲେ ଜାଣି ପ୍ରସନ୍ନ ହେବେ । ଘୋଷା ।
ଅବନା ଭୂମି ସ୍ଥାନ    ଜଳୁଛୁ ବ୍ରହ୍ମଜ୍ଞାନ
ଦୃଷ୍ଟି ଲଗାଅ ଜ୍ଞାନ ନେତ୍ରେ ଦଶିବ । ୧ ।
ନଗମେ ଅଛୁ ବ୍ରହ୍ମ    ସେହୁ ଠାବକୁ ଗମ
ଜନ୍ମ ମରଣ ଦୁଃଖ ସେହୁ ନାଶିବେ । ୨ ।
ଯମ ନସ୍ୟମକୁ ଯାକୁ    କଣରୁ ସେ ପଥକୁ
ଶ୍ରୀଗୁରୁ ଦେବ ଏକା ଉଦ୍ଧର ନେବେ । ୩ ।
ପଦ୍ମ ପାଦକୁ ରଖ    ସେବା ଭଗତ ଖଟ
ଅମରପଦ ତାଙ୍କ ଇଚ୍ଛାଯେ ଦେବେ । ୪ ।
ସତ୍ୟ ଧର୍ମକୁ ଧର    ହ୍ୱାଇ ଗ୍ରଇ ନବାର
ନଜ ଶ୍ରୀଅଙ୍ଗେ ଗ୍ରନ୍ଥ ଲୀନ କରିବେ । ୫ ।
ଭଣିଲେ ଭୀମ କନ୍ଧ    ସେ ଯେ ଅରୂପା ନନ୍ଦ
ସେବଲେ ଯାଇଁ ପାଦେ କଥା କହୁଚେ । ୬ ।

---

୮୪—୭-ଶ୍ରୀଗୁରୁଦେବ ନସ୍ତେ । ୮୪—୧୦-ଗ୍ରଇ ସଂସ୍କର ।
୮୪—୧୩-ସେବ ପାଇଲେ ।

( ୧୫ )

ଦିଠି ଜ୍ଞାନ ନେତ୍ରେ ଶୂନ୍ୟେ ଦେଖ । ଅଭସ୍ମ ମଣ୍ଡଳକୁ । ଘୋଷା ।
କର୍ମକାଣ୍ଡ ଇଟା ପଥର ବସାଇ
ଜ୍ଞାନ କଳା ଚୂନ ଗୁଡିଛନ୍ତି ତହିଁ ।
ସୁପତ୍ୟ ପୁଣ୍ୟକୁ ମାଟିଖତ କରି
ଲିପିଛନ୍ତି ଅନାଦି ଅଲେଖ । ୧ ।

ଧର୍ମ ହୋଇଅଛି ଗୁମ୍ଫୁଟି ପହିଁରି
କୋଠା ଖରକୁଛି ବୃଲି ବେଢ଼ା ବେଢ଼ା ।
ସର୍ଜନା କଳ୍ପନା ଖୁଣ୍ଟି ଅନ୍ପଣା
ମୁଖେ କେ କହିବ କେତେ ଶିକ୍ଷା । ୨ ।

ରାମକୃଷ୍ଣ ନାମ ହୋଇଛି କବାଟ
ଲାଗିଅଛି ଦଶ ପରକାରେ କାଠ ।
ଅର୍ଥ ଲୁହାକଣ୍ଟା ଡାଳଛନ୍ତି ପିଟି
କମ ହୋଇଛି ଦ୍ୱାଦଶ ରୂପ । ୩ ।

ଏକାକ୍ଷର କଣ୍ଠ କୋଲପ ହୋଇଛି
ଜ୍ୟୋତି ବ୍ରହ୍ମଦ୍ୱାରା କବାଟ କରୁଛି ।
ଗୃହଯୁଗ ଯାକ ଦ୍ୱାର ବନ୍ଦ ହୋଇ
ଲାଗିଛନ୍ତି ତହିଁ ଏତେ ଲୋକ । ୪ ।

ଅନାଦି ନଜର ନିଷ୍କାମ ନିର୍ବେଦ
ଜ୍ଞାନୀଜନମାନେ ପାଇବେ ଭେଦ ।
ଏ ପିଣ୍ଡ ରହିବ କରୁଣା ହୋଇବ
ତେବେ ଏ ଜୀବକୁ ଅଛି ମୋକ୍ଷ । ୫ ।

---

୮୫—୩-ପୋଛୁଛନ୍ତି ତହିଁ ।

ଭକ୍ତେ ପ୍ରେମ କଳ୍ପ ମନରେ ଆନନ୍ଦ
ମହାକ୍ରନ୍ଦ ଯେ ଯେ ଅଣରୂପବୃନ୍ଦ ।
ଥିବ ଯେବେ ଧ୍ୟାଇ । ଲୀନ ହେବେ ଯାଇ
କୋଟିଜନ୍ମ କରିଥିଲେ ତପ । ୭ ।

( ୮୭ )

ମହିମାସାଗର ବ୍ରହ୍ମପୁଷ୍ପ । ଅବନା ମନ୍ଦରରେ । ଘୋଷା ।
ଉତ୍ତର ଦକ୍ଷିଣ ମନ୍ଦର ପାଦିଆ
ଉଦେ ଅସ୍ତ ମେରୁ ହୋଇଛୁ ତୂଳିଆ ।
ବୃନ୍ଦାବନ ଯାକ ବୃକ୍ଷଖଣ୍ଡ ଶ୍ରେଣୀ
ମଉଡ଼ ମାରିଛୁ ଯତ୍ନ କରା । ୧ ।

ଅନୁମାନ ବୁଦ୍ଧି ବାରେସି କଳ୍ୟାଣ
ବୃଷ୍ଟି ଫୋଡ଼ ପୋଛୁ କରିଛୁ ନିର୍ମାଣ ·
ସାଲ ପିଆଉଛୁ ବାଣ ତ ନୋହୁଛୁ
ବିବେକ ମନକୁ ସ୍ନେହେ ଧରି । ୨ ।

ତେତିଶକୋଟି ଦେବ ଭୁଅ ନଇ ବତା
ବିଚିତ୍ର କମରେ ଫୁଟାଇଛୁ ଲତା ।
ମେଘନମାଳାକୁ ଛବେଡ଼ା କରି
ସୁବର୍ଣ୍ଣୀ କରିଛୁ ମନ ସୁନ୍ଦର । ୩ ।

ଷୋଳ ବଖରକୁ ସାତ ଗୋଟି ବାଟ
ଲାଗିଅଛୁ ଚନ୍ଦ୍ର ସାଉଁଳ ବାଟ ।
ବସିଛୁ ଉଆଡ଼େ ବଳଣ ବେଢ଼ାରେ
ସାତ କବାଟକୁ ଏକ ଦ୍ୱାର । ୪ ।

ମଧ୍ୟ ବଖୁଣ୍ଟରେ ବାନ୍ଧିଛନ୍ତି ମଠ
ଶାନ୍ତ ଶୀଳ ଦୟା କ୍ଷମା ଧୂନି କାଠ ।
ନିର୍ଧୂମ ଅନଳ ତେଜ ପରବଳ
ଅନବ୍ରତ ଧୂନି ତେଜ ଖର । ୫ ।

ନବଲକ୍ଷ ତାରା ଧୂନିକାଠ ହୋଇ
ଶୂନ୍ୟେ ଉଡ଼ୁଅଛି ଯେସନେକେ ତୁଳା ।
ଭଣେ ଭୀମ କନ୍ଧ ଭକ୍ତକୁଳବୃନ୍ଦ
ଅଗ୍ରେ କର ଯାଉନ୍ତି ତର ୬ ।

( ୮୨ )

ଅଲେଖ ଅନାଦିତ ନିଗମ ଭୂମିରେ ରହିଛନ୍ତି । ଘୋଷା ।
କାମନା କଳ୍ପନା କ୍ଷୁଧା ତୃଷା ନାହିଁ
ନିଦ୍ରା ମଇଥୁନ ଆହାର ନ ଥାଇ ।
ହାସ୍ୟ ପ୍ରେମରସ ନବରଙ୍ଗେ ବେଶ
ହାଇ ଗୁଇ ନାହିଁ ତହିଁ କିଛି । ୧ ।
ନବାଶ ବସ୍ତୁ ନାହିଁ ଗନ୍ଧବାସ
ପାପ ପୁଣ୍ୟ ତହିଁ ନ ଲାଗଇ ଦୋଷ ।
ଆକାର ବିକାର ସକ୍ତ ସମାଗ୍ରୀର
କାହିଁ ନ ଲଭିଣ ଶୂନ୍ୟେ ଛନ୍ତି । ୨ ।
ତୀର୍ଥ ବ୍ରତ ତପ ନାହିଁ ମନ୍ତ୍ର ଜପ
ଲୋଭ ମୋହ ମାୟା ନାହିଁ କାୟାରୂପ ।
ଶୁଭ ଅନୁକୂଳ ନାହିଁ ବେଳ କାଳ
ସଦା ସରବଦା ହେଉଅଛି । ୩ ।

ବେଦ ଶାସ୍ତ୍ରାସ୍ତ୍ରକୁ ଦେଇଛନ୍ତି ଫିଙ୍ଗି

ସହସ୍ର ଯୋଜନେ ରହିଛନ୍ତି ଶଙ୍କି ।

ଧରଢ ଆକାଶ ଆପ ବାୟୁ ତେଜ

ସେମାନଙ୍କୁ ସାକ୍ଷ ରଖିଛନ୍ତି । ୦ ।

ଥିଲେ ଧ୍ରୁବ ତପ ଦେଖିବ ସେ ରୂପ

ତେବେ ଷମା ହେବ ପିତାମାତା ଶାପ ।

ଜନ୍ମ ଲଭିଅଛ ପାତକ କରିଛ

ଏବେ ପାଦପଦ୍ମ ଧର ବାଛୁ । ୪ ।

ଭଣେ ଭୀମ କନ୍ଧ ନିରଗୁଣ ପଦ

ସମସ୍ତଙ୍କୁ ଦୃଶ୍ୟ ନୁହଇ ସେ ଭେଦ ।

ଲୁଚିଅଛୁ ସହି ହବାର ନୁହଇ

ଭକ୍ତ ନୟନକୁ ଦିଶୁଅଛୁ । ୬ ।

( ୮ )

ଅନାମିକା ପଦକୁ ଅମନରେ ଝାଇ ପ୍ରତେକର । ଘୋଷା ।

ଜଳ ପବନର ଭେଦ ନାହିଁ ତହିଁ

ଚନ୍ଦ୍ର ସୂର୍ଯ୍ୟ ତେଜ ବାଜିବାକୁ ନାହିଁ ।

ବ୍ରହ୍ମା ବିଷ୍ଣୁ ଶିବ କୋଟି କଳପ ପୁର

ସେ ଠାବକୁ ସମସ୍ତେ ଅନ୍ତର । ୧ ।

ଆସିଥିଲେ ସିଏ ଯାଇ ନ ପାରିଲେ

ଅନନ୍ତ ଗର୍ଭରେ ସମସ୍ତେ ରହିଲେ ।

ସେ ବହିଲେ କାୟା ଲାଗିଲା ମାୟା

ଅଠଯାତ ହେଲେ ଜନପୁର । ୨ ।

---

୮୭—୧୪—ତେବେ ଷମ୍ୟ ହେବ

ତହିଁ ଉପରକୁ ନ ଦଣେ କାହାକୁ
ଭଗତ ଯେ ହେବ ଦଶିବ ତାହାକୁ ।
ଅତ ବଡ଼ ପ୍ରଥା ଅଟଇ ସେ କଥା
ଯାରେ ଦଖିା ହେବ ସେ ପଦ୍ମର । ୩ ।
ପୂର୍ବଦଗେ ମୁଣ୍ଡ ପଶ୍ଚିମକୁ ଗୋଡ଼
ମଧ୍ୟେ ରହିଅଛୁ ଏକପାଦ ଖଣ୍ଡ ।
ସୁଜନ ପଣ୍ଡିତା ବୁଝିବେ ଏ କଥା
ଅଜ୍ଞାନୀ କି ଅଟେ ବଡ଼ ଦୂର । ୪ ।
ତହିଁର ଉପରେ ଅନାମିକା ନାମ
ଅଗ୍ରୁତ ଅମୂର୍ତ୍ତି ନିତ୍ୟାମ ସେ ବ୍ରହ୍ମ ।
ସେହିଟି ମୁକତ ଜୀବର ସମ୍ପତ୍ତି
ତାଙ୍କୁ ଆଶ୍ରେ କର ନରବରେ । ୫ ।
ଭଣେ ଭୀମ କନ୍ଧ ନବଘନ ଗୃନ୍ଦ
ଅନୁପଶ ଅଛୁ ସୁଧା ମକରନ୍ଦ ।
ପଣନ୍ତ ପ୍ରଜାର ଶ୍ରୀପଦ୍ମର ଧର
ଶ୍ରୀଗୁରୁମୁଖେ ଯୋଗ୍ୟ ବେନ କର । ୬ ।

( ୮୯ )

ରୂପରେଖ ନାହିଁ ଯେ ଶୂନ୍ୟଦେହ । ଅଛୁ ହୃଦେ ହୋଇ । ଘୋଷା ।
ବରଷୁଛୁ ଜଳ ନ ଥାଇ ପବନ
ଅନ୍ତରୀକ୍ଷେ ବାୟୁ ବହେ ଘନ ଘନ ।
ବହୁ ଅଛୁ ଜଳ ନାହିଁ ନଦୀକୂଳ
ଉଲୁକାପାତ ଧାରା ବହି । ୧ ।

---

କକଜକ ଓଦା ପୃଷିଲ୍ଲ ହୋଇଛୁ
କବାଟ ନ ଫିଟୁଁ ନେତରେ ଦଶୁଛୁ ।
ସେଠାରେ ଅଶ୍ରମ ଅନାଦତ ବ୍ରହ୍ମ
ଉଦେ ଅସ୍ତ ନାହିଁ ତହିଁ ହେ । ୨

ନଅଁଠା ପଦ ନସ୍ତାମ ନିଃବେଦ
କଲ୍ପଣା ନ କର ଧର ପଦ୍ମପାଦ ।
ନ ବାଞ୍ଛି ଦର୍ଶନ କରୁଅ ପ୍ରଯନ୍ନ
ଅଶା ଭରସା ନ ଦେଇ ହେ । ୩ ।

ବାଲି ମାଟି ନାହିଁ ଉଭୁକୁଛୁ ହ୍ରଦ
ଗଙ୍ଗାଜଳ ଗ୍ରୁତ୍ତି କୁପଜଳେ ଗାଧ ।
ଲଢ଼ିବ ମୁକତ ନ ବୁଡ଼ିବ ନାଥ
ଦୂବ ପୁଣ୍ୟ ଥିଲେ ପାଇ । ୪ ।

ଗ୍ରୁଇ ପଡ଼ିଅଛୁ ନାହିଁ ବୃକ୍ଷମୂଳ
ପୁଷ୍ପିକଢ଼ି ନାହିଁ ଫଳୁଅଛୁ ଫଳ ।
ଫୁଟିଛୁ ପତର ଡେମ୍ଭ ନାହିଁ ତାର
ଅସାଧନା ମଗେ ପାଇ ହେ । ୫ ।

ପଢ ପକ୍ଷୀରୂପେ କରନ୍ତ ଯୁଗଳ
ଉଡ଼ନ୍ତ ଅସ୍ତ ନାହିଁ ପିନ୍ଧନ୍ତ ବକଳ ।
ସେ ପ୍ରଭୁ ପଦ୍ମରେ ଧ୍ୟାନ କରନ୍ତରେ
ଭଣେ ଖ୍ରୀମଦେନ ଖେଳ ହେ ।

---

୮୮—୨୦—ମେଲଛୁ ପତର
୮୯—କେତେକ ପୋଥିରେ ୨ ପଦ ୩ ପଦରୂପେ ଓ ୩ ପଦ ୨ ପଦ ରୂପରେ ଦେଖା ହୁଏ ।

( ୯୦ )

ପାଶେ ପାଶେ ଅଛ ହେ ନ ଦିଶୁଛ । ଆବୋରି ରହିଛ । ଘୋଷା

ଅଣରୂପେ ଥାଇ ରୂପ ପରକାଶ
ପାପ କରୁଅଛ ନ ଲଗୁଛି ଦୋଷ
ଧନ ନ ମିଳୁଛି ପୁଣ୍ୟ ଅରଜୁଛ
ଖାଲି ହସ୍ତେ ଭ୍ରମୁଅଛ ହେ । ୧ ।

ସତ୍ୟକୁ ନ ଧରି ମିଛ କହେ ନ କଢ
ଯୋଗକୁ ନ ସାଧି ବୋଲାଉଛ ଯତି
ନ କରି ଭଜନ ଦେଇଛ ଚିତ୍ତ ମନ
ଅପରତେ ନାହିଁ କହୁ ହେ । ୨ ।

ଶିଷ୍ୟ ହୋଇ ଅ ଥାଇ
ପ୍ରଭୁପଣ ଗୋଟା ଲେଉଡ଼ିବାକୁ ନାହିଁ ।
ଜାତି ଗାର ନଟ ଶ୍ରେଷ୍ଠପଦେ ଉଚ୍ଚ
ଏତା ନାହିଁ ପୂଜା ଅଛ ହେ । ୩ ।

ଗାଲି ଦ୍ୱନ୍ଦ ନାହିଁ ସଭି ମଧ୍ୟେ ଥାଇ
ନ୍ୟାୟ ଛଡ଼ାଉଛ ଉତ୍ତର ନ ଦେଇ ।
ଯେ ମାରଇ ମାଡ଼ ତାକୁ କରେ ବନ୍ଦି
ଗୋଷ୍ଠୀ ମଧ୍ୟେ ଥାଇ ଚାହୁଁ ହେ । ୪ ।

ସିଦ୍ଧାଣି ନ ହୋଇ ବନାଉଛ ବୁଦ୍ଧି
ରଖିଲ ମୁଣ୍ଡକୁ ପକାଉଛ ଛେଦି ।
କଞ୍ଚା ପିଠା ସ୍ୱାଦ ଏକଠାରେ ମେଦ
ସବୁ ପକାଉଛି ବାଛି ହେ । ।

ଚରଣାରବିନ୍ଦେ ଅବନାରେ ବନ୍ଦେ
ସୁଧାରସ ନାହିଁ ପିଇ ବୋଲ ବୃନ୍ଦେ ।
ଶ୍ରମ ଅରକ୍ଷିତ, ହେବାକୁ ଉଗତ
ଶ୍ରୀଗୁରୁମୁଖରେ କାଢ ମାଛୁ ହେ । ୬ ।

( ୯୧ )

(ଖ) ଭଜ ସର୍ବେ ଚେତ ହେ । ପ୍ରାଣପତ ।
ଗୁରୁ ବଜାସ୍ତେ ଧରତ । ଘୋଷା ।
ଜୀବର କରତା ବଜସ୍ତେ ଫସାରେ
ଭେକବାନା ବନ୍ଧ ବୈଷ୍ଣବ ବେଶରେ ।
ଅତଥ ବୋଲନ୍ତ ମାଗିଣ ଖାଆନ୍ତ
ନାହିଁ ତାଙ୍କ ଫନ୍ଦା ବୁଦ୍ଧି ହେ । ୧ ।
ଅନ୍ନ ଖାଉଛନ୍ତ ନାହିଁ କିଣି ହାଣ୍ଡି
କର ନେଉଛନ୍ତ ପ୍ରଜାକୁ ନ ଦଣ୍ଡି ।
ନୁହନ୍ତ ସେ ରଜା ଖଟିଛନ୍ତ ପ୍ରଜା
ବୁଝୁଛନ୍ତ ନବ ଷିତ ହେ । ୨ ।
କୁଟୁମ୍ବ ଅଛନ୍ତ ଖରଚ୍ଚ ନ ଲୋଡ଼ି
ତଣ୍ଡୁଳ କିଣନ୍ତ ନ ଦେଇ କଉଡ଼ି ।
ଯାଚ ନ ଦଅନ୍ତ ବନ୍ଧୁ ଆଣୁଛନ୍ତ
ଅପ୍ରୀତରେ କର ପ୍ରୀତ ହେ । ୩ ।
ବଳବାଡ଼ ନାହିଁ ଚପୁଛନ୍ତ ହଳ
ବନ୍ଧନ ନ ବୁଣି ଫଳୁଅଛୁ ଫଳ ।

---

୯୧—୪—ସନ୍ୟାସ ବେଶରେ

ମେଣ ଖଳା ନାହିଁ ଧାନ ମଳୁଛନ୍ତି
ନ ରଖି ହଳଆ ଗୋଠ ହେ । ୪ ।
ପୁଣ ବଣ୍ଡ ନାହିଁ ବୋହୁ ଆଣୁଛନ୍ତି
ରତି ସଙ୍ଗ ନାହିଁ ଜନମୁଛି ନାତି
ଶିଶୁ ମେଳ ନାହିଁ ଏକା ଖେଳୁଥାଇ
ଆଗେ ପଛେ ଖେଳୁଛନ୍ତି ହେ । ୫ ।
ଭଣେ ଭୀମ ହୀନ ପାମର ଅଜ୍ଞାନ
ପାଦ ପାଣି ନାହିଁ ଧଶଛୁ ଚରଣ।
ପଚଶ ପ୍ରକୃତି ବଷସ୍ଥାରେ ମାତି
ନାହିଁ ସଦଜ୍ଞାନ ମତି ହେ । ୬ ।

( ୯୨ )

(୪) କର ଲସ୍ଷେ ନାହିଁ ମୁଖୁ ଭସ୍ଷେ ନ ପଡ଼ିବ କାସ୍ଷେ ହେ । ଘୋଷା ।
ତୋଳଛୁ ମନ୍ଦର ନାହିଁ ଖୁମ୍ବ ପାଟି
ଛୁଏଣି କଶଛୁ ଚୂନକୁ ନ ଘୁଣ୍ଟି
ଦଶୁଛୁ ଶୁକଳ ଅତି ପଣମଳ
ସ୍ୱରୂପ ଧବଳ ମସ୍ତୁ ହେ । ୧ ।
ଲଗିଛୁ କବାଟ ନ ଥାଇ କଳଶୀ
ରଜ୍ଜୁ ନାହିଁ ତହିଁ ପଡ଼ିଛୁ ବାନ୍ଧେଣି ।
କାନ୍ଥ ଦେଇଅଛୁ ଚଣ୍ଡା ନ ଘାହୁଛୁ
ଇଟାହିଁ ଦେଅର ନୁହେଁ ହେ । ୨ ।

---

୯୧—୨୨-ଆଗେ ପଛେ ଲଗିଛନ୍ତି
୯୨—୧—୨-ନ ପଡ଼ିବ କାସ୍ଷେ ହେ, କର ଲସ୍ଷେ, ନାହିଁ ମୁଖୁ ଭସ୍ଷେ

ଧୂନି ଜଗାଇଛୁ କୁଣ୍ଡରୁ ନ ଖୋଳି
କାଠ ପୋଡୁଅଛୁ ପାଉଁଶ ନ ପଡ଼ି ।
ହଉଛୁ ହୁତାଶ ବ୍ରହ୍ମତେଜ ଝାସ
ନ ଦିଶଇ ଧୂମମଧ୍ୟେ ହେ । ୩ ।
ଦେଖୁଛୁ ଆଦ୍ଭୁତ ନ ଥାଇଣ ଦୃତ
ଶାସ୍ତ୍ର ପଢ଼ା ନାହିଁ କହୁଅଛୁ ଅର୍ଥ ।
ବତାଉଛୁ ଜ୍ଞାନ ନ ଭେଦ ସମ୍ପୂର୍ଣ୍ଣ
ଧରିବାକୁ ନାହିଁ କଏ ହେ । ୪ ।
ଉଇଁଛୁ ଅରୁଣ ନୁହଇ ଦିବସ
ଚନ୍ଦ୍ର ପ୍ରକାଶିଛୁ ନ ଥାଇ ତମସ ।
ଅନ୍ଧକାର ରାଜି ନାହିଁ ସନ୍ଧ୍ୟା ପ୍ରାତ
ଅନ୍ଧାର ଉଜ୍ଜ୍ୱଳ ନୁହେ ହେ । ୫ ।
ଦିଗ ବଜେ ନାହିଁ ପଡ଼ୁଛୁ ପାଏଡ଼ା
ସୁଆର ନ ଥାଇ କଷୁଅଛୁ ଘୋଡ଼ା ।
କୋରଡ଼ା ନ ଥାଇ ପିଟୁଛୁ ତୁହାଇ
ଭୀମ ଅରକ୍ଷିତ କହେ ହେ । ୬ ।

( ୯୩ )

(୧) ଗୁଣ ଯୁଗେ ନର ଅଙ୍ଗେ ଲଗିଛନ୍ତି ଭକ୍ତ ସଙ୍ଗେ ହେ । ଘୋଷା ।
ଶନ୍ୟ ବୋଲି ଯେଉଁ ଶବଦ । ସୁଜ କର ଘଟେ ସମ୍ବାଦ ।
କହନ୍ତା ନହନ୍ତା ଏ ଦୁଇ ମଧ୍ୟରେ । ବିରାଜିତ ବ୍ରହ୍ମ ସେଠାରେ ।୧ ।

---

୯୨—୧୨-କାଷ୍ଠ ଲଗାଇଛୁ, ୯୨—୧୩-ବ୍ରହ୍ମତେଜ ଝାସ,
୯୨— ୫-କରୁଅଛୁ, ବତାଉଛୁ । ୯୩—୩-ସେଠାରେ
୯୩—୭-ଜ୍ୟୋତିରୂପ ଘେନ, ୯୩—୮-ଟିଣ୍ଡ ରହୁଛୁ ।

ଅଲେଖ ନାମର ଯେ ଅର୍ଥ । ଅଶେଷ ଲକ୍ଷଣେ ଲକ୍ଷିତ ।
ଲେଖ ଅଣଲେଖ ଏ ଶବ୍ଦରେ ଦେଖ । ଭେଦ କର ଆତ୍ମାର କାର୍ଯ୍ୟ । ୧ ।

ଗୁରୁ ବୋଲିବାର ବଚନ । ଗଣନ୍ତ୍ର ସେବାରେ ପ୍ରସନ୍ନ ।
ଯତରୂପ ଦେକ ଜଗତେ ବହାର । ଗୁପତେ ଅଛନ୍ତି ସବେ ଦେ । ୩ ।

ଶଙ୍ଖରେ ପବନ ଖେଳୁଛୁ ସତ୍ୟରେ । ଏ ପିଣ୍ଡ ଚଳୁଛୁ ଶବଦ ବ୍ରହ୍ମରେ ।
ଆସୁଛୁ ଯାଉଛୁ । ଅଗ ଅଗୋଚର ସେ ମାର୍ଗେ । ୪ ।

ପ୍ରଭୁ ବୋଲିବାର ସନ୍ଦେଶ । ପରମ ପୁରୁଷ ସାରସ ।
ପୂର୍ଣ ରହିଅଛି ପର ହୋଇଯିବ । ଅଧଗକୁ ଧର ବେଗେ । ୫ ।

କରଣା କହିବା ବେଦାନ୍ତ । କରୁଛୁ ବ୍ରହ୍ମାଣ୍ଡ ଉଦତ ।
ଭଣେ ଭୀମକନ୍ଧ ଗୁରୁ ପାଦଦ୍ୱନ୍ଦ । କରପଦ୍ମ ଯୋଡ଼ଣ ମାଗେ । ୭ ।

( ୯୪ )

(୨) ଦେହ ଶାସ୍ତ୍ରେ ଭେଦ କର । ରୂପ ଚିହ୍ନି ବାଛୁ ଧର ହେ । ଘୋଷା ।

ଅଙ୍କ ଟି ଅଛଠ ଯୋଜନ
ଏଥି ଅଛୁ ଶୂନ୍ୟ ଭୁବନ ।
ଶେଷରକୁ ଅର୍ଥ କର ସାଧୁ ସନ୍ଥ
ଭେଟିବ ସେ ବ୍ରହ୍ମର ଘର । ୧ ।

ଘଟରେ ବ୍ରହ୍ମକୁ ବହିଛ
ପ୍ରତ୍ୟେକ୍ଷେ ନେଉଛ ଆଣୁଛ ।
ଘଟ ଛୁଟିଗଲେ କେ ଦେଖିଛ ତୋଟଲ
ଏପରି ମହିମା ତାଙ୍କର । ୨ ।

୯୪— ୨-ଅଙ୍କ ଟି ଅଛି ଏ ଜବନ

ସାକ୍ଷାତେ କହୁଛୁ ବଚନ ।
ମଣୁଛ ଯେସନେ ସ୍ୱପନ ।
ଏ ପିଣ୍ଡ ବ୍ରହ୍ମାଣ୍ଡ ଆଜ୍ଞାରେ ଚଳୁଛୁ ।
ତରଳ ଯାଉଛୁ ପଥର । ୩ ।
ବାହ୍ୟେ ଭ୍ରମି ଭ୍ରମି ନ ମର ।
ଆତ୍ମା ନିରୂପଣେ ବଦ୍ଧାର ।
ପରମେ ପରତେ ହୁଅ ତାଙ୍କ ପକ୍ଷେ ।
ଯେହୁ ନେବେ ଅଲେଖପୁର । ୪ ।
ତତ୍ତ୍ୱର ଗୋଚରେ ମିଳୁଛୁ ।
କର୍ମକୁ ଧରାଇ ଚଳୁଛୁ ।
ଗୁରୁସେବା କର, ଧ୍ୟାଇ ଅନୁସର ।
ବସିଛୁ ଏ ଘଟ ଭିତର । ୫ ।
ସେ ଯେ ଅଣରୂପ ପୁରୁଷ ।
ନବ୍ୟାମ ଭକ୍ତରେ ଦୁରୁଶ ।
ବୋଲେ ଖ୍ରମଭକ୍ତ । ଗୁରୁପାଦବନ୍ଦ
ହୃଦ ପଙ୍କ୍ଟା ବନ୍ଧ ଉପର । ୬ ।

( ୯୫ )

(୩) ଘଟେ ଘଟେ ବନେ ଗୁରୁ ।
ଅଣାକାର ତଲ୍ଲତରୁ । ଘୋଷା ।
ପିତା ମାତା ଶୂନ୍ୟ ନଗମ ।
କଲ୍ପଣାରେ ରଚ ସଙ୍ଗମ ।

---

୯୪—୨୪–ସୁଧା ମକରନ୍ଦ

ଏ ପିଣ୍ଡ ବ୍ରହ୍ମାଣ୍ଡ ପୃଥୀ ନବ ଖଣ୍ଡ ।
ଦେଖଛି ପ୍ରତିମା ବିଧାରୁ । ୧ ।

ପାଦରୁ ତାଳୁକା ପର୍ଯ୍ୟନ୍ତ ।
ଅସ୍ଥି ମାଳମାନ ଗନ୍ଥ ତ ।
ଅଙ୍ଗ ରୋମମୂଳ ମହୀ ମାଳ ମାଳ ।
ଦେଖ ଅସ୍ଥି ମାନ ସେ ମେରୁ । ୨ ।

ଏ ଷୋଳ ଡମ୍ବରୁ ଭିତରେ ।
ଖେଳୁଛନ୍ତି ବ୍ରହ୍ମ ସଧୀରେ ।
ପଞ୍ଚୁ ଛି କରଣ ଏ ତିନି ଭୁବନ ।
ନିର୍ଦ୍ଦିଶିଲା ହଁବ ଠାବରୁ । ୩ ।

ନବଦ୍ୱାର ନବ ମେଦିନୀ ।
ତାଳୁ ଶିଖେ ଶୂନ୍ୟ ମୂର୍ଦ୍ଧନି ।
ପଦ୍ମେ ଯୁକ୍ତ ଗଲେ ପଦେ ଆଜ୍ଞା ପଡ଼େ ।
ଭିତର ଅବନା ମନ୍ଦରୁ । ୪ ।

ବତିଶ ବେଢ଼ାର ଭିତର ।
ବଳୟେ ମହିମା ସାଗର ।
ଆଦିଶକ୍ତି ପରେ ଅଲେଖ ପୁରୁଷ ।
ବିଜେ କରିଛନ୍ତି ଶୂନ୍ୟରୁ । ୫ ।

ଅଗ୍ରସ୍ଥ ଜାତକ ଦିନରୁ ।
ବାନ୍ଧି କର କଳିଯୁଗରୁ ।
ବୋଲେ ଶ୍ରୀମକନ୍ଦ ସୁଧାମକରନ୍ଦ ।
ଦୟା ହେବ ବୃନ୍ଦେ ପଦ୍ମରୁ । ୬ ।

( ୯୬ )

(୪) ଗୁପତରେ ରହିଛନ୍ତି । ଦେଖି କଳାପୁର ସନ୍ତ । ଘୋଷା ।

ଦେଇ ଯାଇଛନ୍ତି ଧର୍ମକୁ, ଧର୍ମ ଧର ଡାକ ବ୍ରହ୍ମଙ୍କୁ ।
ଜଗତ ଭଗତ, ଆତଙ୍ଗ ନମନ୍ତେ, କର୍ଣ୍ଣେ ଡେଉଛନ୍ତି ସେ ନନ୍ଦ । ୧ ।

ମୁଖେ ଯେବେ ନାମ ଘୋଷିବେ, ସନ୍ଧି ଥିଲେ ଗୁରୁ ରସିବେ ।
ଶ୍ରୀଗୁରୁଙ୍କୁ ଧ୍ୟାନ, କର ସାଧୁଜନ, ଶୂନ୍ୟେଁ ହେବେ ରୂପ ମୂରତ । ୨ ।

ଭଗତ ଲକ୍ଷଣ ନମନ୍ତେ, ନ ଲାଗନ୍ତି ମାୟା ସଙ୍ଗତେ ।
କ୍ଷଣକରେ ରୂପ, କ୍ଷଣକେ ଅରୂପ, ଭଗତ ନିକଟେ ଅଛନ୍ତି । ୩ ।

ଭଗତ ଅଙ୍ଗରେ ବସନ୍ତି, ଅଗ୍ନିକାନ୍ତି ରୂପ ଦଶନ୍ତି ।
ପୂର୍ଣ୍ଣାନନ୍ଦ ସ୍ୱାମୀ ଘଟେ ପୂରିଛନ୍ତି, କୋଟିଏ କନ୍ଦର୍ପ ସନ୍ତୋଷ । ୪ ।

ଏକ ବ୍ରହ୍ମପାଦ ସଂସାରେ, ଦେଇ ଅମ୍ଭ ଜ୍ଞାନ ଆସ୍ୱରେ ।
ବାହ୍ୟେ ଭ୍ରମାଇଲେ, ସମାଧି ଘେନିଲେ, ସ୍ୱଦେହରେ ଛନ୍ତି ଏ ଛିନ୍ନ । ୫ ।

ଏକ ବ୍ରହ୍ମ ବିନୁ ହୃଦରେ, ଅନ୍ୟ ମୁଁ ନ ଜାଣେ ଚଉଦରେ ।
ବୋଲେ ଖ୍ରୀମକନ୍ଦ, କବିକୁଳ ଚନ୍ଦ, ଗୁରୁପାଦେ ରହୁ ମୋ ମତି । ୬ ।

( ୯୭ )

(୧) ଭଜ ଅଲେଖ ବ୍ରହ୍ମଙ୍କୁ ।

ଈଶ୍ୱର ଧ୍ୟାଇଅଛନ୍ତି ଯେଉଁ ନାମ ଅଜପାକୁ । ଘୋଷା ।

ଦିବା ନିଶି ହରଶଂକର । ଧ୍ୟାଇଛନ୍ତି ଯା ପୟର ।
ସେ ପାଦକୁ ଚିହ୍ନି ଧର । ଛେଦ ମୋହନ ମଦକୁ । ୧ ।

---

୯୬—୧୦—ଆତ୍ମଜ୍ଞାନ ଗୋଚରେ
୯୭—୧—ଅଜସ୍ତ୍ର ବ୍ରହ୍ମଙ୍କୁ

ଏକାକ୍ଷର ଆଶ୍ର ଧ୍ୟାଇ । ଯୁଗେ ଯୁଗେ ଥିବୁ ବନ୍ଧ ।
ଜନ୍ମ ମୃତ୍ୟୁ ନ ଲାଗଇ । ଚିହ୍ନି ଧର ଧର ତାଙ୍କୁ । ୨

ଛାଡ଼ ଏ ସକଳ ଦ୍ୱନ୍ଦ୍ୱ । ଭଜ ଏକା ନଶବେଦ ।
ଛପନ କୋଟି ଜନ୍ମ ଜୀବ । ନ ଚିହ୍ନି ସ୍ୱାମୀ ପଦକୁ । ୩

ଋଗବେଦ ଋଗଗ୍ରନ୍ଥ । ଜ୍ଞାଟ ପଣ୍ଡିତେ ସେ ଯୁକ୍ତ ।
ଶୁଷ୍କ ପଦ ସଙ୍ଗେ ଲକ୍ଷ । ଛାଡ଼ି ଜପ ଅଜପାକୁ । ୪

ଋଣକ୍ୟ ଅବଧାନ ପାଠ । ଏ ସର୍ବ ଅଟନ୍ତି ଶାଠ ।
ସାରସ୍ୱତ ବ୍ୟାକରଣ । ତେଜି ଜପ ଅରୂପକୁ । ୫ ।

ଏକାଦଶ ଯାତ୍ରା କନ୍ଥ । ମାତାର ପଦ୍ମ ସେ ହୋଇ ।
ତହିଁରେ କି ଫଳ ପାଇ । ଛାଡ଼ି ଜପ ନିର୍ବେଦକୁ । ୬

ନ ଭଜ ନର ବିଷ୍ଟକୁ । ନ ଭଜ ବୃନ୍ଦାବଣ୍ଡାକୁ ।
ମାୟା କଲ୍ପଣାଟି ସେହୁ । ଚିହ୍ନି ଧର ନିଗମକୁ । ୭ ।

ଅଷ୍ଟାଦଶ ପୁରାଣିକ । ଏ ସର୍ବେଟି ଅବିବେକ ।
ଗତି ମୁକ୍ତି କିଛି ନାହିଁ । ତେଜି ଧର ଅନାମକୁ । ୮

ଭଣିଲେ ସେ ଗ୍ରାମ ଭନ୍ଥ । ପଦ ଅଟଇ ବିଛନ୍ଦ ।
ଜ୍ଞାନୀ ଜନେ ଚିହ୍ନି ଧର । ଭଜ ଅନାମ ରୂପକୁ । ୯ ।

( ୯୮ )

(୧) ଭଜ ଅବର୍ଣ୍ଣ ରୂପକୁ ।
ବର୍ଣ୍ଣି ନାହାନ୍ତି ଯୋଗୀଏ ଅବର୍ଣ୍ଣିକା ପୁରୁଷକୁ । ଘୋଷା ।

ସାରଳା ସେ ସିଦ୍ଧ ମୁନି । ବର୍ଣ୍ଣି ନ ପାରିଲେ ପୁଣି ।
ଅରୂପ ଅବ୍ୟକ୍ତ ନାମ । ଚିହ୍ନି ଧର ଧର ତାଙ୍କୁ । ୧ ।

ନାରଦ ଅଗସ୍ତି ମୁନି । କଣ୍ବ କପିଳ ଏ ତିନି ।
ଯୋଗଧ୍ୟାନେ ମନ ଦେଇ । ଦୃଶ୍ୟ ନ ପାଇଲେ ଯାଙ୍କୁ । ୨ ।

ବ୍ରହ୍ମା ଏ କଲେଣି ଧ୍ୟାନ । ନ ପାଇଲେ ଯନ୍ତ୍ର ଶୂନ୍ୟ ।
ଚାରିବେଦରେ ଲୋଡ଼ିଲେ । ଅଭସ୍ମ ବ୍ରହ୍ମ ପାଦକୁ । ୩ ।

ଚାରିବେଦେ ନାହିଁ ଯେହୁ । ଲୋଡ଼ିଲେ ପାଇବେ କାହୁଁ ।
ଛଅ ବେଦେ ନ ଭେଟନ୍ତି । ଅନ୍ତର୍ଣ୍ଣିକା ପୁରୁଷକୁ । ୪ ।

ଏ ଦେହରେ ରହିଅଛି । ଚିହ୍ନି ଧର ଧର ବାଛି ।
ଯେ ଚିହ୍ନି ପାରିବ ତାଙ୍କୁ । ରହିବ ଚାରିଯୁଗକୁ । ୫ ।

ଭଜିଲେ ସେ ଶ୍ରମ କନ୍ଧ । ଖୋଜ୍‌ଛନ୍ତି ସ୍ୱାମିପଦ ।
ନାହିଁ ପାଉଛନ୍ତି ଅନ୍ତ । ଅନାମିକା ପୁରୁଷକୁ । ୬ ।

( ୯୯ )

(୩) ଭଜ ଅଲେଖ ରୂପକୁ । ଶୂନ୍ୟ ବ୍ରହ୍ମେ ଚିତ୍ତ ଦେଇ ଭଜ
ଅରୂପ ରୂପକୁ । ଘୋଷା ।

ଅଲେଖ ରୂପକୁ ଯେହୁ । ଜଗତରେ ଖେଳୁଥାଇ ।
ତା ପାଦେ ଶରଣ ମୋର । ଧ୍ୟାଇ ଅରୂପାନନ୍ଦଙ୍କୁ । ୧ ।

ଚାରି ଯୁଗେ ଚାରି ବେଦେ । ନ ସେବିଲେ ସ୍ୱାମୀପାଦେ ।
ଛପନ କୋଟି ଜନ୍ତୁ ଜୀବ । ଚିହ୍ନି ନ ପାରିଲେ ଯାକୁ । ୨ ।

ଚାରି କର୍ମ ଚାରି ଧର୍ମ । ନ ପାଇଲେ ବ୍ରହ୍ମଜ୍ଞାନ ।
ଛଅ ରିତୁ ଦଶା ନାହିଁ । ଅନ୍ତ ନ ପାଇଲେ ଯାକୁ । ୩ ।

ସିଦ୍ଧାନ୍ତୀ ଯୋଗାନ୍ତୀ ଯୋଗୀ । ବେଦାନ୍ତୀ ନାଗାନ୍ତୀ ବୈରାଗୀ ।
କୋଟି କୋଟି ତପ କରି । ଦୃଶ୍ୟ ନ ପାଇଲେ ଯାକୁ । ୪ ।

---

୯୯—୫—ନ ଚିହ୍ନିଲେ ସ୍ୱାମୀପଦେ—

ନବଲକ୍ଷ ତାରାଗଣ । ଗମି ନ ପାଇଲେ ଜ୍ଞାନ ।
ଚନ୍ଦ୍ର ସୂର୍ଯ୍ୟ ବୃଶଦଗ । ନ ପାଇଲେ ଆଦ୍ୟ ମଧ୍ୟକୁ । ୫ ।

ତେତିଶ କୋଟି ଦେବଗଣ । ଯୋଗୀ ଋଷି ବୃନ୍ଦ ଜାଣ ।
ରାମ କୃଷ୍ଣ ବଳଦେବ । ନ ଚହ୍ନି ସ୍ୱାମିପାଦକୁ । ୬ ।

ଭଣିଲେ ସେ ଶ୍ୟାମକନ୍ଧ । ଅରୂପ ପସ୍ୱର ବନ୍ଧ ।
ଧ୍ୟାଇ ଅଛୁ ହୃଦଗତେ । ଅଲେଖ ବ୍ରହ୍ମ ପାଦକୁ । ୭ ।

( ୧୦୦ )

(୨) ଭଜ ଆହେ ଜ୍ୟୋତନାଦ । କରୁଛୁ ବୀଣା ଶବଦ ।
ଶବଦ ଉପରେ ରହିଅଛନ୍ତି ନବେଦ । ଘୋଷା ।

ବେଦର ଉପରେ ରହିଅଛନ୍ତି ନବେଦ ।
ନବେଦ ଉପରେ ଅଛୁ ଅଣାକାର ପଦ । ୧ ।

ଅଣାକାର ପାଦବନ୍ଦ । ଗଳୁଅଛୁ ମକରନ୍ଦ ।
ପାନ କର ସାଧୁଜନେ ପିଅ ମକରନ୍ଦ । ୨ ।

ଅଲେଖ ଶୂନ୍ୟ ଶବଦ । ଶୂନ୍ୟେ କରୁଅଛୁ ନାଦ ।
ଶୂନ୍ୟପୁରେ ଦ୍ୱାରା ହୋଇଛନ୍ତି ଗୁଣବେଦ । ୩ ।

ଶୂନ୍ୟ ଜ୍ୟୋତ ପାଦ ମୋଦ । ରହିଛନ୍ତି ଛଡ଼ ବେଦ ।
ଛଡ଼ ମଣ୍ଡଳରେ ଶୂନ୍ୟ ରୂପ କର ନାଦ । ୪ ।

ଋକ୍ ସାମ ଯଜୁ ଅର୍ଥ । ତଳ ପାବଛନ୍ତିରେ ମୁଦଂ ।
ଅଲେଖ ବ୍ରହ୍ମେ ବିଷ୍ଟୁକୁ କରଇନ୍ତି ଭେଦ । ୫ ।

ଅଭସ୍ତ ବ୍ରହ୍ମର ପାଦ । ଭଜଣ କରନ୍ତି ମୁଦ ।
ଭଜୁଛନ୍ତି ନବେଦରେ ଭକ୍ତ-ଜନ-ବୃନ୍ଦ । ୬ ।

ଶୂନ୍ୟେ ଶୂନ୍ୟେ ବ୍ରହ୍ମନାଦ । ରହୁ ଅନାମିକା ପଦ ।
ଷାଣାଯନ୍ତ୍ର ସ୍ମୃତ୍ରିଛନ୍ତି । ଅଟଳେଖ ନିର୍ବେଦ । ୭ ।

ଅଲେଖ ଅରୂପାନନ୍ଦ । ଶୂନ୍ୟେ ରହିଅଛୁ ନାଦ ।
ଲଏ କର ସାଧୁଜନେ ମନକୁ ନିର୍ବେଦ । ୮ ।

ଧର ନିଷ୍କାମ ନିର୍ବେଦ । ମାୟାଜାଲମାନ ଛେଦ ।
ଶୂନ୍ୟେ ଜ୍ୟୋତି ପାଦ ତହେ ମନକୁ ମୋଦ । ୯ ।

ଅଣାକାର ପାଦଦ୍ୱନ୍ଦ । ଝରୁଅଛୁ ମକରନ୍ଦ ।
ଭଣିଲେ ସେ ଭୀମକନ୍ଧ କବିକୁଳ ବୃନ୍ଦ । ୧୦ ।

## ପ୍ରଥମ ଖଣ୍ଡ ସମାପ୍ତ



ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରେସ, ବାଣୀବିହାର—୧୦୦୦

ପ୍ରାଚୀଗ୍ରନ୍ଥମାଳା ଷଷ୍ଠ ଖଣ୍ଡ

# ଭଜନମାଳା



ପ୍ରଥମ ଶତକ

ଭୀମଭୋଇ କୃତ

ସୁବିଶୁଦ୍ଧ ଦ୍ୱିତୀୟ ସଂସ୍କରଣ



ପ୍ରାଚୀସମିତି ଦ୍ୱାରା ପ୍ରକାଶିତ

ସମ୍ପାଦକ;—

ଅଧ୍ୟାପକ ରାୟ୍‌ସାହେବ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

ମୂଲ୍ୟ ଛଅଣା ମାତ୍ର